ପ୍ରଥମ ଭାଗ



# ଅପୋଲିକର କାହାଣୀ



ଲେଖକ

ପଣ୍ଡିତ ଶ୍ରୀ ମହେଶ୍ୱର ମିଶ୍ର

ଦଶଅଣା ମାତ୍ର

# ଅବୋଲକରା କାହାଣୀ

## ପ୍ରଥମ ଭାଗର ସୂଚୀପତ୍ର







# ଅବୋଲକରା କାହାଣୀ



## ସୁନାଦେଉଳ କଥା

ଶ୍ରୀଲତାବେଷ୍ଟିତାଙ୍ଗସ୍ୟ ବସ୍ତୁ କଲ୍ପଦ୍ରୁମସ୍ୟ ବଃ ।
ଅବତାରମହାଶାଖାଃ ପ୍ରସ୍ତୁ ଫଳମୀପ୍ସିତଂ ॥

ପୂର୍ବକାଳରେ ଉତ୍କଳ ପ୍ରଦେଶରେ ହରଶର୍ମା ନାମକ ଜଣେ ସାମନ୍ତ ବ୍ରାହ୍ମଣ ଥିଲେ । ସେ ତୀର୍ଥ କରି ଯିବାକୁ ସାଙ୍ଗ ଖୋଜିଲେ ଯେ, କେହୀ କେହି ମିଳିଲେ ନାହିଁ । ଗାଡ଼ି, ମଟର, ସଡ଼କ କିଛି ନ ଥିବାରୁ ଯାତ୍ରା ବଡ଼ ଦୁର୍ଗମ ହୋଇଥାଏ । ସେଥିପାଇଁ କହନ୍ତି, "ଗୟା, ଗଲେ ଗୟା ସୋ ଗୟା ।" ସାଥୀ ନ ପାଇ ସାମନ୍ତ ବ୍ରାହ୍ମଣ ବଡ଼ ଚିନ୍ତା କରି ଅବୋଲକରା ନାମକ ଗୋଟିଏ ଭଣ୍ଡାରୀ ଟୋକାକୁ କହିଲେ, "ବାବା ଚାଲ, ମୋ ସାଥିରେ ତୀର୍ଥ କରିଯିବୁ । ତୋର ଖୋରାକ ପୋଷାକ ବାଦ ମାସକୁ ପାଞ୍ଚ ଟଙ୍କା ଦରମା ପାଇବୁ ।" ଏହା ଶୁଣି ଅବୋଲକରା କହିଲା, "ଗୋସାଇଁ ! ଜାଣିଛ ନା, ମୋର ନାମ ଅବୋଲକରା । ମୁଁ କାହାରି ବୋଲ କରେ ନାହିଁ । ଯେବେ ମୋତେ ଡାକୁଛନ୍ତି, ତା ହେଲେ ଗୋଟିଏ କଥା ସତ୍ୟ କରନ୍ତୁ ।" ସାମନ୍ତ କହିଲେ, କଣ କହ । ଭଣ୍ଡାରୀ କହିଲା, ମୁଁ ଯିବ ଯେ, ମାତ୍ର ଯାଉଁ ଯାଉଁ ବାଟରେ ଯାହା ଆଶ୍ଚର୍ଯ୍ୟ କଥା ଦେଖୁଥିବ, ତାର ଅର୍ଥ ମୋତେ କହି ଦେଉଥିବ । ଯେବେ ନ କହିବ ମୁଁ ସେହିଠାରୁ ଫେରି ଆସିବ । ଏହା ଶୁଣି ସାମନ୍ତ ଭାବିଲେ ଯେ, କେହି ତ ସାଥୀ ମିଳୁ ନାହିଁ, ହେଉ ତେବେ ଚାଲ ଯିବା । ସେଠାରୁ ଶୁଭ ଅନୁକୂଳରେ ସାମନ୍ତ ଓ ଭଣ୍ଡାରୀ ଉତ୍ତରାଭିମୁଖରେ ଚାଲିଲେ । ପାରଳା, ତରମୂଳା, ବଡ଼ଖେମୁଣ୍ଡି, ସାନଖେମୁଣ୍ଡି, ଆଠଗଡ଼, ବରଗଡ଼, ଘୁମୁସର, ନୂଆଗଡ, ରଣପୁର ପ୍ରଭୃତି କେତେକ

ଦେଶ ଦେଖି ଯାଉଁ ଯାଉଁ ବାଟରେ କଣ୍ଟକୂଟ ନାମକ ଗୋଟାଏ ଦେଶରେ ପହଞ୍ଚିଲେ । ସେଠାରେ ଦେଖିଲେ ଗୋଟିଏ ଶିବମନ୍ଦିର ନିକଟରେ ଗୋଟିଏ ପୁଷ୍କରିଣୀ ଅଛି, ତରୁ ଲତା ପୁଷ୍ପ ଫଳରେ ଛାଗାଟି ଅତି ମନୋହର, ପୁଷ୍କରିଣୀ ଜଳ ଅତି ନିର୍ମଳ । ସାମନ୍ତ କହିଲେ, ଅବୋଲକରା ଆଜି ଏହିଠାରେ ରହିବା, ତୁ ଗୋଟିଏ ଟଙ୍କା ନେଇ ଯାଅ, ଏହି ଦିଶୁଥିବା ସହରରୁ ସଉଦାପତ୍ର କିଣି ଚଞ୍ଚଳ ଆ । ଏହା କହି ସାମନ୍ତ ସ୍ନାନ ନିତ୍ୟକର୍ମ କରିବାକୁ ଗଲେ । ଅବୋଲକରା ଯାଇ ଦେଖିଲା ଯେ, ସେହି ନଗରରେ ଧୁନାରେ ଯୋଡ଼ିଏ ଦେଉଳ ଅଛି । ସେଥିରୁ ଗୋଟିକର କାମ ଶେଷ ହୋଇଅଛି, ଆଉ ଗୋଟିକର ଅଧା କାମ ହୋଇଅଛି । ଏହା ଦେଖି ଆଶ୍ଚର୍ଯ୍ୟ ହୋଇ ସମସ୍ତଙ୍କୁ ପଚାରିଲା, ଗୋଟିଏ ଦେଉଳ କାହିଁକି ଅଧା ହୋଇଅଛି ? ତାର କାରଣ କେହି କହି ପାରିଲେ ନାହିଁ । ଅବୋଲକରା ଆଉ ସଉଦା କଣ କରିବ ? ସେଠାରୁ ଫେରି ଆସିଲା । ସାମନ୍ତ ଦେଖିଲେ ଯେ ଅବୋଲକରା ତାହିଁ ପରି ମୁହଁ ବାଟି ପରି କରି ଫେରି ଆସୁଛି । ମନେ ମନେ ଭାବିଲେ କେଉଁଠାରେ କଣ ଦେଖି ଆସିଲା । ଏ ସମୟରେ ଅବୋଲକରା ପହଞ୍ଚି କହିଲା, ହେ ହେ ସାମନ୍ତ, ଆଉ ଅଛ କି ? ଆଜି କହିଲେ ତ ହେବ' ! ସାମନ୍ତ କହିଲେ, କି ରେ, କଣ ଦେଖିଲୁ କି ? ଅବୋଲକରା କହିଲା ଏହି ସହର ନିକଟରେ ଯୋଡ଼ିଏ ଧୁନାର ଦେଉଳ ତୋଳା ହେଉଥିଲା, ସେଥିରୁ ଗୋଟିକର କାମ ଶେଷ ହୋଇଛି, ଆରଟି କାହିଁକି ଅଧାକାମ ହୋଇ ପଡ଼ିଅଛି ? ଏଥିର କାରଣ ବୁଝାଇ ଦିଅ । ସାମନ୍ତ କହିଲେ, ହଉ ତେବେ ଚଞ୍ଚଳ ସଉଦା ଆଣେ, ରୋଷେଇ କରୁଥିବା, କଥା କହୁଥିବା । ରୋଷେଇ ବଢ଼ିବ, କଥା ଛିଡ଼ିବ ।

ତା ପର ଅବୋଲକରା ଯାଇଁ ସବୁ ସଉଦା କିଣି ଆଣିଲା । ସାମନ୍ତ ଚୁଲ୍ଲୀ ଲଗାଇ କହିଲେ, "ପକା କମ୍ବଳ ପୋତ ଛତା, ବସ ଅବୋଲକରା ଶୁଣୁ କଥା ।" ଏହି କଣ୍ଟକୂଟ ନଗରରେ ଦତ୍ତଶ୍ରେଷ୍ଠ ବୋଲି ଏକ ରାଜା ଥିଲେ । ତାଙ୍କର ପୁତ୍ର ସନ୍ତାନ କିଛି ହେଲା ନାହିଁ । ନ ହେବାରୁ ଦିନେ ରାଣୀ ରାଜାଙ୍କୁ କହିଲେ, "ମୋର ତ ପୁତ୍ର ହେଲା ନାହିଁ, ଦେଖୁ ଦେଖୁ

ରାଜଗାଦି ବୁଡ଼ିଯିବ । ତୁମେ ଆଉ ଗୋଟିଏ କନ୍ୟା ବିବାହ ହୁଅ ।” ଏହା ଶୁଣି ରାଜା କହିଲେ, ନା ମୁଁ ଆଉ ବିବାହ ହେବି ନାହିଁ । ବଡ଼ପୁରୁଷେ କହିଛନ୍ତି, “ଭାତ ନ ସରିଲେ ଦୋଘରା କର, କଳ ନ ଥିଲେ ଯୋଡ଼ା ମାଇପ କର ।” ରାଣୀ କହିଲେ, ତାହା ହେବ ନାହିଁ । ମୁଁ ତାକୁ ଶାଶୁପରି ପାଳନ କରିବି । ତୁମ୍ଭେ ନିଶ୍ଚେ ବିବାହ ହୁଅ, ନୋହିଲେ ରାଜଗାଦି ବୁଡ଼ିଯିବ । ଏହା ଶୁଣି ରାଜା ଗୋଟିଏ କନ୍ୟା ବିବାହ ହେଲେ । ତାହାର ନାମ ଚମ୍ପାବତୀ । ବଡ଼ ରାଣୀର ନାମ ଥିଲା ହୀରାବତୀ । ରାଜା ଦୁଇଗୋଟି ଉଆସ ନିର୍ମାଣ କରାଇ ଦୁଇ ରାଣୀଙ୍କି ସମାନ ଦୃଷ୍ଟିରେ ଦେଖିଲେ, ଏମନ୍ତ କି କାହାରିଠାରେ ଊଣା ଅଧିକ ସ୍ନେହ କରନ୍ତି ନାହିଁ । ଏହିପରି କିଛିଦିନ ଯିବାପରେ ପ୍ରତିଦିନ ବଡ଼ରାଣୀ ରାଜାଙ୍କୁ କହନ୍ତି, ସାନରାଣୀଟି ବଡ଼ ସୁଲକ୍ଷଣୀ । ସେ ଆସିବା ଦିନଠାରୁ ଆମ୍ଭ ଘରେ ସବୁ ମଙ୍ଗଳ ଦେଖାଯାଉଅଛି । ଆଉ ସାନ ରାଣୀ ରାଜାଙ୍କୁ କହୁଥାଏ, ଏ ବଡ଼ ରାଣୀଟା ବଡ଼ ଦୋଗୁରୁଣୀ । ଏହାର ମୁଖ ଚାହିଁଲେ ଭଲ ନାହିଁ, ଏହାକୁ ଘରୁ ବାହାର କରିଦିଅ । ରାଜା ଏହା ଶୁଣି ବିଚାର କଲେ, “ମାଇପୀ କଥା, ପାଣ ବାରତା, ଏହା ନ ଶୁଣିବ କାନେ । ହୁଁ କରୁଥିବ, ହଁା କରୁଥିବ ମନ ଦେଇଥିବ ଆନେ ।” ଦେଖିବା— ଏଥିଁରୁ କଣ ହେଉଛି ? ଏହା ବିଚାରି ତୁନି ହୋଇ ରହିଥାନ୍ତି । ଏମନ୍ତେ କେତେଦିନ ଗଲା ଯାନ୍ତେ ଯୋଗକୁ ବଡ଼ ରାଣୀ ଗର୍ଭବତୀ ହେଲା । ତାହା ଜାଣି ସାନ ରାଣୀର ଏକବାରେ ସାହସ ଉଡ଼ିଗଲା । ସେ ମନେ ମନେ ବିଚାରିଲା, ମୋର କର୍ମ ବଡ଼ ମନ୍ଦ, ନୋହିଲେ କି କୋଉଁ ବାନ୍ଧି ବାଂଝୀର ପୁଅ ହୋଇ ସେ ରାଜମାତା ବୋଲାଇବ; ମୁଁ ବିକ ପ୍ରାୟ ଚାହିଁ ବସିଥିବି । ଯାହା ହେଉ ଏଥିପାଇଁ ଉପାୟ କରିବି । ବଡ଼ ପୁରୁଷେ କହିଛନ୍ତି, “ଉପାୟରେ ଯାହା ସିଦ୍ଧ ନ ହୁଏ, ତାହା ପରାକ୍ରମରେ ସିଦ୍ଧ ହୁଏ ନାହିଁ ।” ଏତିକ ବିଚାରି ଗୋଟିଏ ଫିକର କରିବା ପାଇଁ ନିଜର ଗୋଟିଏ ବିଶ୍ୱାସୀ ଦାସୀକୁ ଡାକି କହିଲା, ଅଳି ତୁ ଗୋଟିଏ କାମ କରିବୁ । ଯେତେବେଳେ ରାଜା ବଡ଼ ରାଣୀ ଘରକୁ ପହଡ଼ିବାକୁ ଯିବେ, ତୁ ସେତିକିବେଳେ ଲୁଚି ଲୁଚି ଯାଇ ରାଜାଙ୍କର

ନିଜ ଘୋଡା ଯୋଡ଼ିକ ନେଇ ଆସି ସେହି ସ୍ଥାନରେ ଛଣ୍ଡା ଘୋଡା ଯୋଡ଼େ ଥୋଇଦେଇ ଚାଲି ଆସିବୁ । ଦାସୀ ଏହା ଶୁଣି ସମସ୍ତ ଜାଣି ରହିଥିଲା । ରାଜା ବଡ଼ରାଣୀ ଉଆସକୁ ଯିବାର ଦେଖି ସେହି କଥାଟି କରି ଚାଲି ଆସିଲା । ରାଜା ରାତି ପାଉ ପାଉ ଉଠି ଆସି ଦେଖନ୍ତି ସେହି ଛଣ୍ଡା ଘୋଡା ମାଡ଼ ସାନରାଣୀ ଉଆସବାଟେ ଘଣି ଅସିଲା-ବେଳକୁ ସାନରାଣୀ କହିଲା, ତୁମ୍ଭଙ୍କୁ ମୋ ଘରବାଟେ ଯିବାକୁ ହେବ ନାହିଁ । ରାଜା ଆଶ୍ଚର୍ଯ୍ୟ ହୋଇ କହିଲେ, କାହିଁକି ? ରାଣୀ କହିଲା, ମୁଁ କଣ କହିବି; ନିଜ ଘୋଡ଼ାକୁ ଦେଖ । ରାଜା ଦେଖିଲେ ଯେ, ଆପଣାର ଘୋଡା ନୁହେ—ଛଣ୍ଡା ଘୋଡା ଯୋଡ଼େ । ଦେଖି ବଡ଼ ବିସ୍ମୟ ହେଲେ । ରାଣୀ କହିଲା, କଣ ଦେଖୁଛ ? ମୁଁ ପରା ଏ କଥା ଜାଣିବା ମୂଳରୁ କହିଥିଲି । ରାଜା କହିଲେ, କଣ ଜାଣିଅଛୁ କହ । ରାଣୀ କହିଲା, ବଡ଼ରାଣୀ ଦୋଗୁଲୁଣୀ ବୋଲି ମୁଁ ଯାହା କହୁଥିଲି ତା ଏବେ ପ୍ରତ୍ୟକ୍ଷରେ ଦେଖ । କେହି ଜଣେ ବାଟପୁରୁଷ ସେ ଘର ଭିତରେ ଥିଲା । ତୁମ୍ଭଙ୍କୁ ଦେଖି ଭୟରେ ତରତର ହୋଇ ପଳାଇ ଗଲାବେଳେ ସେ ତୁମ୍ଭ ଘୋଡା ନେଇ ତାର ଛଣ୍ଡା ଘୋଡା ଛାଡି ଯାଇଅଛି । ରାଜା ଏ କଥା ଶୁଣି ବିଚାର କଲେ, ନିଶ୍ଚେ ଏହା ସତ୍ୟ । ମାଇପିଙ୍କ କଥା ବ୍ରହ୍ମାଙ୍କୁ ଅଗୋଚର । ଏହା ବିଚାରି ସେହି ଦିନୁ ବଡ଼ରାଣୀର ମୁହଁ ଚାହିଁଲେ ନାହିଁ । ବଡ଼ରାଣୀ ଏଥିର କାରଣ କିଛି ନ ଜାଣି କାହାକୁ କିଛି ନ କହି ଦୁଃଖରେ ରହିଥାନ୍ତି । କିଛିଦିନ ପରେ ସାନରାଣୀ ମଧ୍ୟ ଗର୍ଭବତୀ ହେଲା । ଦୁଇରାଣୀ ଯେ ଯାହା ଉଆସରେ ଥାନ୍ତି । ଆଗ ବଡ଼ରାଣୀର ଗୋଟିଏ ପୁଅ ଜନ୍ମ ହେଲା । ଛ ମାସ ଗଲାପରେ ସାନରାଣୀର ମଧ୍ୟ ଗୋଟିଏ ପୁଅ ହେଲା ।

ରାଜା ସାନରାଣୀର ପୁଅଠାରେ ବଡ଼ ଆଗ୍ରହ କରୁଥାନ୍ତି । ବଡ଼ରାଣୀର ପୁଅକୁ ଅଦୌ ପଚାରନ୍ତି ନାହିଁ । ଏହିପରି ସାତ ବର୍ଷ ହେବାରୁ ରାଜା ବିଚାର କଲେ, ବଡ଼ ପୁଅ ନ୍ୟାୟରେ ରାଜା ହେବ; ମାତ୍ର ସାନ ପୁଅକୁ ବିଦ୍ୟା ପଢ଼ାଇ ତାକୁ ରାଜା କରିଦେବି । ଏହା ଭାବି ଗୁରୁଙ୍କୁ ଡକାଇ ବିଦ୍ୟା ପଢ଼ାଇଲେ । ଏହା ଦେଖି ବଡ଼ରାଣୀର ପୁଅ

ମା'ଙ୍କୁ ପଚାରିଲା, ସାନଭାଇ ପାଠ ପଢ଼ୁଅଛି, ମୁଁ ପଢ଼ିବି । ମା କହିଲେ, ତୋତେ କିଏ ପଢ଼ାଇବ ? ତାକୁ ପିନା ରଜା ପଢ଼ାଉଅଛନ୍ତି; ତୋ କର୍ମରେ ତ ବଗିଡ଼ି ଅଛନ୍ତି । ମୁଁ କଣ କରିବି ? ଏହା ଶୁଣି ସେ ପିଲା ଚିନ୍ତିଲା କି ମୁଁ ନିଜେ ପଢ଼ିବି । ଏ କଥା ମନରେ ଘାଞ୍ଚି ପାଠଶାଳାର ପିଣ୍ଡାରେ ସର୍ବଦା ବସିଥାଏ, ସାନଭାଇ ଯାହା ପଢ଼େ ସବୁ ମନେ ରଖି ଘରକୁ ଯାଇ ଲେଖି ପକାଏ । ଏପରି କେତେ ଦିନ ଚଳିଲା । ଗୁରୁ ସାନ-ଭାଇକୁ ଛ ଶାସ୍ତ୍ର ନ ବ୍ୟାକରଣ ଓଗେର ସମସ୍ତ ବିଦ୍ୟା ପଢ଼ାଇ ଦେଲେ; ମାତ୍ର ସେ ସବୁ ଏ କାନେ ପଶି ସେ କାନେ ଯାଉଥାଏ । ବଡ଼ଭାଇ ସବୁ ଘୋଷି ମନେ ରଖୁଥାଏ । ଯେତେବେଳେ ପିଲାମାନଙ୍କୁ ଷୋଳବର୍ଷ ବୟସ ହେଲା, ରଜା ବିଚାର କଲେ, ଏଥର ପୁଅକୁ ରାଜ୍ୟଭାର ଦେବା । ଏହା ଭାବି ସଭା କଲେ । ପାତ୍ର, ମନ୍ତ୍ରୀ, ଦଳେଇ, ଦଳବେହେରା, ରାଉତ, ମହାନ୍ତ, ବ୍ରାହ୍ମଣ, ବୈଷ୍ଣବ, ଚଷା, ଶୂଦ୍ର ସମସ୍ତଙ୍କୁ ଡକାଇ ସଭା କରି ଏହି କଥା କହିଲେ, ତୁମ୍ଭେମାନେ ସମସ୍ତେ ଶୁଣ:—ଆମ୍ଭ ପୁତ୍ରମାନଙ୍କର ରାଜତ୍ୱ ପାଇବାକୁ ବୟସ ହେଲା, ମାତ୍ର କେଉଁ ପୁଅକୁ ଯୁବରାଜ କରିବା ତୁମ୍ଭେମାନେ କହ । ଏହା ଶୁଣି ସମସ୍ତେ କହିଲେ, 'ବଡ଼ ଥାଉଁ ଥାଉଁ ସାନ ରଜା ହେବ କିପରି ?' ରଜା କହିଲେ, ନା ଯୋଗ୍ୟପୁତ୍ର କୁଳଶ୍ରେଷ୍ଠ । ଯେ ବିଦ୍ୟାବନ୍ତ ହେବ ସେ ରଜା ହେଉ । ଏହା କହି ବିଦ୍ୟା ପରୀକ୍ଷା କଲେ । ସାନପୁଅ କିଛି କହି ପାରିଲା ନାହିଁ । ବଡ଼ପୁଅକୁ ପଚାରିବାରୁ ଗୋଟିଏ ପାଠକୁ ପାଞ୍ଚ ପ୍ରକାରେ ଅର୍ଥ କଲା । ରଜା ଦେଖି ଚମତ୍କାର ହୋଇ କହିଲେ, ଆଜ ସଭା ଏତିକି ଥାଉ—କାଲି ବୁଝିବା । ଆରଦିନ ସଭାରେ ରଜା କହିଲେ, ଆମ୍ଭେ କ୍ଷତ୍ରିୟ, ବିଦ୍ୟା ଆମ୍ଭର ଲୋଡ଼ା ନାହିଁ । ଯେ ପରାକ୍ରମରେ ଅଧିକ ହେବ ସେ ରଜା ହେବ । ଯେ ଆଜଠାରୁ ଦୁଇମାସ ମଧ୍ୟରେ ସୁନାର ଗୋଟିଏ ଦେଉଳ କରି ପାରିବ ତାକୁ ରାଜତ୍ୱ ଦେବା । ଏପରି ଶୁଣି ସଭାଲୋକେ ରଜାଙ୍କୁ ବଡ଼ ନିନ୍ଦା କଲେ । ଆଉ କହିଲେ, ଯାହାଙ୍କର ଜନ୍ମିତ ପୁତ୍ରଠାରେ ଏପରି କୁହିମ. ତାଙ୍କ ରାଜ୍ୟରେ କିଏ ବାସ କରିବ ? ଏପରି ବିଚାର କରି ଭୟରେ ରଜାଙ୍କ କିଛି ନ କହି ଯେ ଯାହାର ଗୃହକୁ ଫେରିଗଲେ ।

ରାଜା ଘରକୁ ଯାଇ ଭଣ୍ଡାରଘର ସୁନା ଦେଇ ସାନ ପୁଅ ସକାଶେ ଇଛା ଛାଆର କରିବାକୁ ଲାଗିଲେ । ଏଣେ ବଡ଼ପୁଅ କ୍ରୋଧରେ ଯାଇ ମାଙ୍କୁ କହିଲା, ବାପା ମୋଠାରେ କପଟ କରି ସାନଭାଇକୁ ରାଜା କରାଉଅଛନ୍ତି । ମା କହିଲେ, କଣ କରିବା ? କର୍ମକୁ ଆଦର ତୁନି ହୋଇ ରହ । ପୁଅ କହିଲା, ନା, ମୁଁ ଯୁଦ୍ଧ କରିବି । ମା କହିଲେ, ତୁ କି ଯୁଦ୍ଧ କରିବୁ ? ବଡ଼ଲୋକେ କହନ୍ତି "ଏକେ ଧ୍ୟାନଂ ଦ୍ୱୟୋର୍ବିଦ୍ୟା ତ୍ରୟାଣେ ଗୃହସଂଗ୍ରହଃ । ପଞ୍ଚ ସପ୍ତ କୃଷିଂ କୁର୍ଯ୍ୟୁ ବହୁଭିର୍ଯୁଦ୍ଧମାଚରେତ୍ ।" ଜଣକରେ ଧ୍ୟାନ ଦୁଇ ଜଣରେ ବିଦ୍ୟା, ତିନି ଜଣରେ ଧନ ଅର୍ଜନ, ପାଞ୍ଚ ସାତରେ କୃଷି ଏବଂ ବହୁତ ଲୋକରେ ଯୁଦ୍ଧ ହୁଏ । ହାତୀ, ଘୋଡ଼ା, ସୈନ୍ୟ ସବୁ ତ ତାଙ୍କର, ତୁ କଣ କରିବୁ ? ଏହା ଶୁଣି ପୁଅ କହିଲା, ତେବେ ବିଷ ଖାଇଦେବି । ପୁତ୍ରଠାରୁ ଏପରି ଶୁଣି ମା କହିଲେ, ବାବୁ ଧୈର୍ଯ୍ୟ ଧର, ମୁଁ ଗୋଟିଏ ଉପାୟ କହିବି ।

ମୋ ପିତାଙ୍କ ଘର ନିକଟରେ କିଛି ଦୂର ଛଡ଼ାରେ ପୁଣ୍ଡ୍ରଜଳ ନଦୀତୀରରେ ଜଣେ ସନ୍ନ୍ୟାସୀଙ୍କର ଆଶ୍ରମ ଅଛି । ମୁଁ ପିଲାଦିନେ ତାଙ୍କୁ ବହୁତ ସେବା କରିଥିଲି । ତୁ ଏବେ ଯାଇ ତାଙ୍କୁ ଏ ଦୁଃଖ କହିଲେ ସେ ଦୟା କରି ଉପାୟ କହିଦେବେ । ଏହା ଶୁଣି ପୁଅ କହିଲା—ମା, ମୋତେ କିଛି ଧନ ଦେ, ମୁଁ ଶୀଘ୍ର ଯିବି । ମା ତହୁଁ ତିନିଶ ଟଙ୍କା ଦେଲେ । ପୁଅ ଟଙ୍କା ପାଇ ଗୋଟିଏ ଘୋଡ଼ା ଆଉ କିଛି ଅଳଙ୍କାର କିଣି ଶୀଘ୍ର ଚାଲିଗଲା । ଯାଇ ତିନି ଦିନରେ ମାମୁଙ୍କ ଘରେ ପହଞ୍ଚିଲା । ମାମୁମାନେ ଭଣଜାକୁ ଦେଖି ବଡ଼ ଆନନ୍ଦରେ ରଖିଲେ । ଭଣଜା ଦୁଇଦିନ ରହି ହାଲଚାଲ ବୁଝି ଘରକୁ ଯିବି ବୋଲି କହି ଋଷି ଆଶ୍ରମକୁ ଗଲା । ଗଲା ବେଳକୁ ଋଷି ସ୍ନାନ କରିବାକୁ ଯାଇଅଛନ୍ତି । ରାଜକୁମାର ଆଶ୍ରମଟିକୁ ଓଳାଇ ଦେଇ ଫୁଲ ଫଳ ତୋଳି ଥୋଇଦେଇ ଲୁଚି ରହିଲା । ଏ ସମୟରେ ଋଷି ଆସି ଦେଖିଲେ, ଆଶ୍ରମଟି ବଡ଼ ନିର୍ମଳ ଦିଶୁଅଛି । ପୁଣି ଆର ଦିନ ଋଷି ସ୍ନାନକୁ ଯିବାବେଳେ ରାଜପୁତ୍ର ପୂର୍ବ ପରି କରି ଦେଇଥାଏ । ଋଷି ବଡ଼ ସନ୍ତୁଷ୍ଟ ହୋଇ ଡାକିଲେ, କିଏ ଭକ୍ତ ଆଶ୍ରମକୁ ଆସିଅଛ, ଆମ୍ଭଙ୍କୁ ଦେଖା କର । ଏହା ଶୁଣି ରାଜପୁତ୍ର

ଶୀଘ୍ର • ହିବାର ଦଣ୍ଡ ପ୍ରଣାମ କରି ଛିଡ଼ା ହେଲା । ଋଷି ପଚାରିଲେ, ତୁ କିଏ ? ରାଜପୁତ୍ର କହିଲା, ମୁଁ ହାରାବତୀର ପୁଅ । ଋଷି ବଡ଼ ଆଗ୍ରହରେ ବସାଇ ଫଳ ମୂଳ ଖାଇବାକୁ ଦେଇ କହିଲେ 'ବାବା ! ତୋର ମା ମଙ୍ଗଳରେ ଅଛି ତ ? ଆଉ ତୁ ବାଳୁତ ପୁଅ କାହିଁକି ଏ ଘୋର ଅରଣ୍ୟକୁ ଆସିଲୁ ।' ରାଜପୁତ୍ର କହିଲା, 'ଆପଣଙ୍କ ଦୟାରୁ ଆମ୍ଭେ ମଙ୍ଗଳରେ ଅଛୁଁ ।' ଏହାପରେ ସବୁ ଦୁଃଖ ଜଣାଇ ବାପାଙ୍କର ଦୁର୍ବିଚାର କହି କାନ୍ଦିଲା । ଋଷି ଆଶ୍ୱାସନା କରି କହିଲେ, 'ବାବା ! କିଛି ଚିନ୍ତା କର ନାହିଁ । ଆମ୍ଭଠାରୁ ଗୋଟିଏ ମନ୍ତ୍ର ଘେନ, ଆଉ ପରଶମଣି ନିଅ । ପଥରରେ ଦେଉଳ ତୋଳାଇ ପରଶମଣି ମନ୍ତ୍ରି ଲଗାଇ ଦେଲେ ସୁନା ହୋଇଯିବ ।' ଏହା କହି ରାଜପୁତ୍ରକୁ ପରଶମଣି ଏବଂ ମନ୍ତ୍ର ଦେଲେ । ରାଜପୁତ୍ର ତାହା ପାଇ ଋଷିଙ୍କୁ ମେଲାଣି ମାଗି ଘୋଡ଼ା ଚଢ଼ି ଯିବାକୁ ବାହାରିଲା । ଯାଉ ଯାଉ ବାଟ ଛାଡ଼ି ଘୋର ଜଙ୍ଗଲରେ ପଶିଗଲା । ସେ ଜଙ୍ଗଲ କଥା କିଏ କହିବ ? ସିଂହ, ବାଘ, ଭାଲୁ ଅନେକ ଅଛନ୍ତି, ଆଉ ଛେପ ଟିକିଏ ପଡ଼ିଲେ କଉଡ଼ି କଡ଼େ, ପତ୍ରଟିଏ ପଡ଼ିଲେ କୁଲାଟାଏ, କାଠ ଖଣ୍ଡେ ଧଡ଼ିଲେ ଢିଙ୍କିଟାଏ, ଏପରି ଅଗ୍ନାଗ୍ନି ବନସ୍ତ । ରାଜପୁତ୍ର ଭୟରେ ଶୀଘ୍ର ଚାଲି ଯାଉଥାଏ । ଦିନ ଦୁଇପହର ହେଲାଣି, ରାଜପୁତ୍ରକୁ ବଡ଼ ଭୋକ ଶୋଷ ଲାଗିଲା । ଏ ସମୟରେ ଦେଖିଲା ଯେ, ଜଙ୍ଗଲ ମଧ୍ୟରେ ଗୋଟାଏ ବଡ଼ ଘର ଅଛି । ବିଚାର କଲା, ଏଇଟି ଧର୍ମଶାଳା ହୋଇଥିବ । ଏହା ଭାବି ସେଠାକୁ ଯାଇ ଘୋଡ଼ାରୁ ଓହ୍ଲାଇ ପିଣ୍ଡାରେ ବସିଲା । ଦଇବରେ ସେଇଟା ଡକାଇତ ଘର । ସେ ଘରେ ବେଙ୍କିଚନ୍ଦ ନାମରେ ଜଣେ ଡକାଇତ ଥାଏ, ତାର ଭାର୍ଯ୍ୟା ଆଉ ସାତ ପୁଅ ସାତ ବୋହୂ ଥାନ୍ତି । ଲଳିତା ବୋଲି ଝିଅଟିଏ ଥାଏ । ତା ପରି ସୁନ୍ଦରୀ ସଂସାରରେ ନାହିଁ—ସେ ଝିଅକୁ ଘର ଜଗାଇ ସମସ୍ତେ ଡକାଇତି କରିବାକୁ ବାଟ ଘାଟ ଜଗି ଯାଇଥିଲେ । ଏ ସମୟରେ ରାଜପୁତ୍ର ଡାକିଲା, ଏ ଘରେ କିଏ ଅଛ ହୋ ? ଜଳ ମନ୍ଦେ ଖାଇବାକୁ ଦେବ କି । ଏହା ଶୁଣି ଲଳିତା ଶୀଘ୍ର ଆସି ଦେଖିଲା ଯେ, ଗୋଟିଏ ସୁନ୍ଦର ଯୁବକ ଅନେକ ଅଳଙ୍କାର ପିନ୍ଧି ବସିଅଛି; ଘୋଡ଼ାଟାଏ ବନ୍ଧା ହୋଇଅଛି ।

ଦେଖି ବରୁଚ କଲା, ଯଦି ବାପ କି ଭାଇମାନେ ଆସନ୍ତେ ଏହାଙ୍କୁ ମାରି ସବୁ ନେଇଯିବେ । ମୁଁ କଣ କରିବ ? ଯାହାହେଉ କାଳ ହରଣର ଉପାୟ କରିବ । ଏହା ବରୁଚି କହିଲା, ପଥିକ ! ଦଣ୍ଡେ ମାତ୍ର ବସ, ମୁଁ ଦହି ଲୁଣ ମରିଚ ସଜାଡ଼ି ଆଣି ଦେବ । ଏହା କହି ଘର ଭିତରକୁ ଯାଇ ଲୁଚି ଦେଖୁଥାଏ । ଏଣେ ରାଜପୁତ୍ର ପରୀକ୍ଷା କରିବାକୁ ପରଶମଣିଟି ମନ୍ଥଣ କରି ପଥର ଖମ୍ବରେ ଲଗାଇ ଦେବାରୁ ତାହା ସୁନା ହୋଇଗଲା । ତା ପରେ ରାଜପୁତ୍ର ପ୍ରସ୍ରାବ କରିବାକୁ ଘର ପଛକୁ ଯାଇ ଦେଖିଲା ଯେ, ଗୋଟାଏ କୁଣ୍ଡକୂପ ଅଛି । ତହିଁରେ ମଲା ମନୁଷ୍ୟ ମୁଣ୍ଡ, ହାଡ଼, ଗୋଡ଼ ପୂର୍ଣ୍ଣ ହୋଇଅଛି । ଦେଖି ବରୁଚ କଲା, ଏ ନିଶ୍ଚେ ଡକାଇତ ଘର । ବହୁତ ଲୋକ ମାରି ଏଥିରେ ପକାଇ ଅଛି, ମୋତେ ସେହିପରି ମାରିଦେବ । ଏହା ଭାବି ଭୟରେ ଘୋଡ଼ା ଚଢ଼ି ଚଞ୍ଚଳ ପଳାଇଗଲା । ଏ ସମୟରେ ଭୈରବ ଡକାଇତ ଆସିଲେ । ଝିଅ ବାପାକୁ ଦେଖି କହିଲା, ଏହିକ୍ଷଣି ଜଣେ ପୁରୁଷ ଘୋଡ଼ାରେ ବସି ଆସିଥିଲା । ତା ଦେହରେ ସହସ୍ର ଟଙ୍କାର ଅଳଙ୍କାର ଥିଲା, ଅଉ କଣ ହାତରେ ଥିଲା ଲଗାଇ ଦେଲା ଯେ, ଦେଖ ପଥର ଖମ୍ବଟା ସୁନା ହୋଇ ଯାଇଅଛି । ଦଣ୍ଡେ ବସି କଣ ଡରକି ଏହି ବାଟେ ଚାଲିଗଲା । ଏହା ଶୁଣି ଝିଅକୁ ଡକାଇତ କହିଲା, ତୁ ଚଞ୍ଚଳ ତେଲ, ହଳଦ, ଅଳତା, ସିନ୍ଦୂର, ଲଗାଇ ଅଳଙ୍କାର ଏବଂ ନୂଆ ଶାଢ଼ୀ ପିନ୍ଧି ମୋ ପଛେ ପଛେ ଦଉଡ଼ିଆ । ଝିଅ ସେହିପରି କଲା । ଦୁହେଁଯାକ ଘୋଡ଼ା ଟାପୁ ଦେଖି ଦଉଡ଼ିଲେ । ଏପରି ବହୁତ ଦୂର ଗଲେ, ଜଙ୍ଗଲ ଶେଷ ହୋଇଗଲାଣି; ଆଗରେ ଗୋଟିଏ ଗ୍ରାମ ଦିଶୁଅଛି । ରାଜପୁତ୍ର ପଛକୁ ଚାହିଁ ଦେଲା ଯେ ଏ ଦୁହେଁ ଘୋଡ଼ାରେ ଅଛନ୍ତି । ତାଙ୍କୁ ଦେଖି ଭୟରେ ରଡ଼ି କଲା, 'କେ ଅଛ ଧାଇଁ ଆସ, ଚୋରେ ମତେ ମାରି ପକାଉଛନ୍ତି ।' ଏହା ଶୁଣି ଗ୍ରାମର ବହୁତ ଲୋକ ଆସି ପଚାରିଲେ, କଣ କଣ ? ଭୈରବ ଡକାଇତ କହିଲା, ଦେଖ— ଏ ମୋର ଝିଅକୁ ବାହା ହେଲେ, ଶଳାମାନେ ଥଟ୍ଟା କରି କଣ କହିବାରୁ ରୁଷିକରି ଚାଲି ଯାଉଅଛନ୍ତି । ଝିଅ ଦିଅ କିଏ ପାଇଚ ରଖିବ ? ଯେବେ ଯିବେ ତାଙ୍କ ଭାର୍ଯ୍ୟାକୁ ସେ ନିଅନ୍ତୁ । ରାଜପୁତ୍ର କହିଲେ ମୁଁ ଏହାକୁ ଜାଣେ

ନାହିଁ । ଏହାର ଝିଅକୁ ମୁଁ ବିଭା ହୋଇ ନାହିଁ । ଏ ଜଣେ ଡକାଇତ । ସମସ୍ତେ ଭାବିଲେ, ଏ କଷ୍ଟେ ବଡ଼ ହୋଇଅଛି, ନୋହିଲେ ଝିଅକୁ ନେଇଯାଅ ବୋଲି ସେ କହନ୍ତା କି ? ଚାଲ, ଏହାକୁ ବୁଝାଇ ଦେବା । ଏହା ଭାବି ରାଜପୁତ୍ରକୁ କହିଲେ, ତୁ କନ୍ୟା ନେଇ ଯା, ଶଳାମାନଙ୍କ ଆଗ୍ରହକୁ ତୁଚ୍ଛି କନ୍ୟା ଛାଡ଼ିଗଲେ କାହାର ହାନି ହେବ ? ଏହା ଶୁଣି ରାଜପୁତ୍ର ଆଶ୍ଚର୍ଯ୍ୟ ହୋଇ ବିଚାର କଲା—ମର୍କଟସ୍ୟ ବିବାହେନ ଗର୍ଦ୍ଦଭା ସ୍ତୁତିପାଠକାଃ, ଅନ୍ୟୋନ୍ୟଂ ତେ ପ୍ରଶଂସନ୍ତି ଅହୋରୂପ ମହୋଧ୍ୱନିଃ । ଯେପରି ମାଙ୍କଡ଼ ବିଭାରେ ଗଧ ସ୍ତୁତି ପଢୁଅଛି, ଦୁହେଁ ଦୁହିଁଙ୍କୁ ପ୍ରଶଂସା କରୁଅଛନ୍ତି—ମାଙ୍କଡ଼ର ରୂପକୁ ଗଧର ଧ୍ୱନି ସମାନ; ସେହିପରି ସେ ଡକାଇତର କଥାକୁ ଏ ଭଦ୍ରଲୋକଙ୍କର ବିଚାର ସମାନ । କଣ କରିବ ? କନ୍ୟା ନେବ ବୋଲି ଅଙ୍ଗୀକାର କଲା । ଡକାଇତ କାନ୍ଦି କାନ୍ଦି ଝିଅକୁ ଗୁପ୍ତରେ କହିଲା—ଏ କାଳକୂଟ ବିଷ ନେ, ଆଉ ଚୂଡ଼ା ଭିତରେ ଛୁରୀ ଖଣ୍ଡିଏ ନେଇଥା । ବାଟରେ ତାକୁ ବିଷ ଖୁଆଇ ଦେଇ ଛୁରୀରେ ତୋଟି କାଟି ସବୁ ରତ୍ନ ଅଳଙ୍କାର ଧରି ଫେରି ଆସିବୁ । ଏପରି କହି ରାଜପୁତ୍ରଠାରେ କନ୍ୟା ସମର୍ପି ଫେରିଗଲା ।

ରାଜପୁତ୍ର କନ୍ୟାକୁ ଘୋଡ଼ାରେ ବସାଇ ଦେଶକୁ ଗଲା । ଯାଉ ଯାଉ ଜାଠରେ ବସା କରି ରହିଲେ । ସମବୟସ୍କ ପୁରୁଷ ଓ ସ୍ତ୍ରୀ ଏକା ଗୃହରେ ରହିବାରୁ ଦୁହିଙ୍କର ପ୍ରଣୟ ହେଲା । ଆରଦିନ ଲଳିତା କହିଲା "ବହୁତ ଦେଉ କପଟ ହେଉ ବିଭାଘର ହେଲା, ଆଜ ପିଠାପଣା କରିବା ।" ରାଜପୁତ୍ର ହଉ କହି ଅଟା, ଘିଅ, ଚିନି ଆଣିଦେଲା । ଲଳିତା ପିଠାରେ ବିଷ ଭରି ରାଜପୁତ୍ରକୁ ଖାଇବାକୁ ଦେଲା । ରାଜପୁତ୍ର ବିଷଜ୍ୱାଳାରେ ମୂର୍ଚ୍ଛା ହୋଇ ପଡ଼ିଲା । ଲଳିତା ତୋଟିରେ ଛୁରୀ ଦେଲାବେଳେ ଈଶ୍ୱରଙ୍କ କୃପାରୁ ରାଜପୁତ୍ର ଅଳ୍ପ ଚେତା ପାଇ ତାର ହାତ ଧରି ପକାଇ କହିଲା, ରହ ରହ, ମତେ କାହିଁକି ମାରୁଛୁ ? ମୋ ଘରକୁ ଗଲେ ରାଜ୍ୟରେ ରାଣୀ ହେବୁ, ସହସ୍ରେ ଦାସୀ ଖଟିଥିବେ । ଆଉ ମତେ ମାରି ଅଳଙ୍କାରଟିକ ନେଇ କଣ କରିବୁ ? କେବେ ବାପଘରେ ଝିଅର କାଳ କଟିବାର ଦେଖିଛୁ କି ? ଏହା ବିଚାର କର । ଏ କଥା ଶୁଣି ଲଳିତା ବିଚାର

କଲ, ଏ କଥା ସତ୍ୟ । ମୁଁ ଅପରାଧ କଲି । ଏ ପର ପୁରୁଷକୁ ହାତରେ ମାର ଦେଉଥିଲି । ତା ପର ଗାରୁଡ଼ି ମନ୍ତ୍ରରେ ବିଷ ଝାଡ଼ଲା, ଝାଡ ଝାଡ ବିଷ ହରଣ କରିଦେଲା । ରାଜପୁତ୍ର ଚେତା ପାଇ ଉଠି ବସିଲା, ଲଳିତା ବିନୟରେ କହିଲା, ମୋର ଦୋଷ କ୍ଷମାକର । ମୁଁ ପର ବୁଦ୍ଧିରେ ଏହା କରିଥିଲି, ଆଜିଠାରୁ ତୁମ୍ଭର କଣାଦାସୀ ହୋଇ ରହିବ । ରାଜପୁତ୍ର କହିଲା ତୋର ଦୋଷ ନାହିଁ । ଯାହା ଯୋଗଥାଏ ତାହା ହୁଏ, ଯଥା—ଅବଶ୍ୟଂ ଭାବିନୋ ଭାବା ଭବନ୍ତି ମହତାମପି; ନଗ୍ନତ୍ୱଂ ନୀଳକଣ୍ଠସ୍ୟ ମହାହିଶୟନଂ ହରେଃ । ଯାହା ଯୋଗ ଥାଏ ତାହା ଅବଶ୍ୟ ହୁଏ । ଦେଖ, ଯୋଗ ଥିବାରୁ ମହାଦେବ ଲଙ୍ଗଳା ହେଲେ, ବିଷ୍ଣୁ ସାପ ଉପରେ ଶୋଇଲେ । ଏହା କହି ଲଳିତାକୁ ସଙ୍ଗେ ଧରି ନିଜ ଦେଶକୁ ଗଲା । ଘର କୋଶେ ଦୂର ଅଛି ମାଲୁଣୀ ଘରେ ଲଳିତାକୁ ରଖି ଦେଇ କହିଲା, ମାଲୁଣୀ ! ତୁ ଏ କନ୍ୟାକୁ ଯତ୍ନରେ ପାଳୁଥିବୁ, ଅନ୍ୟ କେହି ଜାଣିବେ ନାହିଁ । ନେ ଶହେ ଟଙ୍କା ରଖ, ଦୁଇମାସ ପରେ ଦୁଇଶହ ଟଙ୍କା ଦେଇ କନ୍ୟାକୁ ନେବ । ମାଲୁଣୀ କନ୍ୟାକୁ ରଖିଲା । ରାଜପୁତ୍ର ଘରକୁ ଗଲା ।

ଘରେ ତାହାର ମା ମୃତକ ପରି ବୁଢ଼ି ବସିଥିଲେ, ପୁଅ ତାଙ୍କୁ ନମସ୍କାର କରି କହିଲା, ଋଷି ଏହି ରତ୍ନଟି ଦେଇଅଛନ୍ତି । ଯାହାକୁ ପଥର ଦେଉଳରେ ଘସିଦେଲେ ସୁନା ହୋଇଯିବ । ଏହା କହି ମାଙ୍କୁ ରତ୍ନ ଦେଲା । ମା ରତ୍ନଟି ଅଲମାରି ଉପରେ ରଖି ଖାଇବାକୁ ପୁଅକୁ ଦେବା-ପାଇଁ ଗଲେ । ରାଣୀ ଗୋଟିଏ ଝିୁଅ (କନ୍ୟା) ପୋଷିଥିଲେ, ସେ ଝିଅର ମନ୍ତ୍ରୀପୁଅଠାରେ ବିଶ୍ୱାସ ଥାଏ । ଝିଅ ସେ ରତ୍ନଟି ଲୁଚାଇ ନେଇ ମନ୍ତ୍ରୀ-ପୁଅକୁ ଦେଇ ପକାଇଲା । ରାଜପୁତ୍ର ଭୋଜନ ସାରି ଦେଖିଲେ ଯେ ରତ୍ନଟି ନାହିଁ । ତାଙ୍କର ଚିତ୍ତଭ୍ରମ ହୋଇ ସେ ପାଗଳ ହୋଇଗଲେ । ଏହା ଦେଖି ରାଣୀ ମୂର୍ଚ୍ଛିତା ହୋଇ ପଡ଼ିଗଲେ । ମାଲୁଣୀ ଫୁଲ ଦେବାକୁ ଆସିଥିଲା । ଏ କଥା ସବୁ ଦେଖି ଯାଇ ଲଳିତା ଆଗରେ କହିଲା । ଲଳିତା ଶୁଣି କିଛି ଭୟ ନ କରି ପହରେ ରାତିଠାରେ ଉଠି ରାଜନଗର ପାଖକୁ ଗଲା । ଭିତରେ ପଶିବାକୁ ବାଟ ନ ପାଇ ମନ୍ତ୍ରବଳରେ ଗୁଆ-

ଗଛକୁ କୁଆଁଇ ଅଣି ଭିତରକୁ ଗଲା । ନଗ୍ରଲୋକେ ସମସ୍ତେ ଅଚେଷ୍ଟାରେ ଶୋଇଅଛନ୍ତି, କେବଳ ଯ୍ତାବତୀ ରାଣୀ ଜଗି ବସିଥିଲେ । ଲଳିତାକୁ ଦେଖି ଦେବୀ ବୋଲି ଭାବି ହାତଯୋଡ଼ି କହିଲେ—ଦେବି । ମତେ ରଖାକର । ଲଳିତା କହିଲା; ମୁଁ ଦେବ ନୁହେଁ, ତୁମ୍ଭର ଦାସୀ । ତୁମ୍ଭେ କାହିଁକି ଅକୁଳିତ ହେଉଅଛ ? ରାଣୀ କହିଲେ, କଣ କହିବ ? ମୋର କର୍ମକୁ ମନ୍ଦ ଘଟିଅଛି । ପୁଅ ଋଷିଙ୍କୁ ସେବା କରି ପରଶମଣି ଅଣିଥିଲା । ସେ ମଣିଟି ଘରି ଭିତରେ ହଜିଗଲା, ସେଥିପାଇଁ ପୁଅ ପାଗଳ ହୋଇ- ଅଛି । ଏ ସମୟରେ ମୋ କଥା କଣ ପଚାରୁଛ ? ଲଳିତା କହିଲା ଦୁଇଶହଟଙ୍କା, ଥୋକେ ଅଲଙ୍କାର, ଆଉ ଖଣ୍ଡିଏ ପାଟଶାଢ଼ୀ ମତେ ଦେଲେ ମୁଁ ରତ୍ନଟି ଅଣି ଦେବ । ରାଣୀ ତକ୍ଷଣେ ତାହା ସବୁ ଦେଇ କହିଲେ, ରତ୍ନଟି ଅଣିଦେଲେ ଆଉ ହଜାରେ ଟଙ୍କା ବକ୍‌ସିସ୍‌ ପାଇବୁ । ଲଳିତା ତକ୍ଷଣେ ଗୁଆଗଛରେ ଚଢ଼ି ଚାଲିଗଲା । ସେହି ନଗର ଶେଷରେ ଟକଟାଏ କୋଠାଘର ଟିଏ ପାଞ୍ଚଦିନ ସକାଶେ ତିନିଶ ଟଙ୍କା ଦେଇ ଭଡ଼ାନେଲା । ତା' ପର ଅଲଙ୍କାର ଓ ପାଟଶାଢ଼ୀ ପିନ୍ଧି ବଂଶୀ ଗୋଟିଏ ଧରି ଉପର ମହଲକୁ ଉଠି ବଂଶୀ ବଜାଇଲା । ରାଜାଙ୍କ ସାନପୁତ୍ର, ମନ୍ତ୍ରୀପୁତ୍ର, ପାତ୍ରପୁତ୍ର, କଟୁଆଳପୁତ୍ର ଚାରିହେଁ ଚାରି ମିତ । ସେମାନେ ଘୋଡ଼ା ଚଢ଼ି ରାସ୍ତାରେ ଯାଉଥିଲେ, ବଂଶୀନାଦ ଶୁଣି କୋଠା ଉପରକୁ ଚାହିଁଲେ ଯେ, ଜଣେ ଦିବ୍ୟ ସ୍ତ୍ରୀ ଛିଡ଼ା ହୋଇ ବଂଶୀ ବଜାଉଅଛି । ପରସ୍ପରରେ ବିଚାର କଲେ, ଏପରି ସୁନ୍ଦରୀ ସ୍ତ୍ରୀ ଜଗତରେ ଦେଖା ନାହିଁ । ଏଠାକୁ କାହୁଁ ଅସିଲା, କପରି ଜଣାଯିବ ? ଏହା ଭାବି କାମ ପୀଡ଼ିତ ହୋଇ ଫେରି ଅସିଲେ । ଘରେ ତାଙ୍କର ମନ ରହିଲା ନାହିଁ । ଯେ ଯାହା କୌଶଳରେ ତାର ନିକଟକୁ ଯିବାପାଇଁ ଭାବିଲେ । ପ୍ରଥମେ ରାଜପୁତ୍ର ତାର ନିକଟକୁ ଯାଇ ପଚାରିଲା, ସୁଲୋଚନେ । ତୁମ୍ଭେ କିଏ ? ଏଠାକୁ କାହିଁକି ଅସିଅଛ ? ଲଳିତା କହିଲା, ମୋର ଘର କାଞ୍ଚନନଗର, ମୋ ନାମ ହେମଲତିକା, ମୁଁ ବେଶ୍ୟାବୃତ୍ତି କରେ । ଏହା ଶୁଣି ରାଜପୁତ୍ର କହିଲା, ତୁ ଯଦି ବେଶ୍ୟା—ମୁଁ ଏହି ଦେଶ ରାଜାଙ୍କର ପୁତ୍ର । ଅଜ ରାତିରେ ତୋ ପାଖକୁ ଅସିବି । ବେଶ୍ୟା କହିଲା, ଯଦି

ଅସିବ ଦୁଇହଜାର ଟଙ୍କା ଦେବ, ଆଉ ରତ୍ନ ବସ୍ତ୍ର ଅଳଙ୍କାର ପିନ୍ଧିଥିବ । ଦିନ ଶେଷଠାରୁ ରାତି ଏକପହରର ଯାଏ ରହି ଚାଲିଯିବ । ରାଜପୁତ୍ର ସେହିପରି ହେଉ କହି ଫେରି ଆସିଲା । କିଛିକ୍ଷଣ ପରେ ମନ୍ତ୍ରୀପୁତ୍ର ଯାଇ ପଚାରି ସବୁ ହାଲଚାଲ ବୁଝି, ମୁଁ ଆଜି ରାତିରେ ତୋର ପାଖକୁ ଆସିବି ବୋଲି କହିଲା । ବେଶ୍ୟା କହିଲା, ଯେବେ ଅସିବ ହଜାରେ ଟଙ୍କା ଦେବ ଆଉ ରତ୍ନ ଅଳଙ୍କାର ପିନ୍ଧିଥିବ । ଏକପହରର ଶେଷଠାରେ ଆସି ଦୁଇ ପହରର ହେଲେ ଫେରିଯିବ । ମନ୍ତ୍ରୀପୁତ୍ର ସେପରି ହେଉ କହି ଫେରି ଆସିଲା । ତା'ପର ପାତ୍ରପୁତ୍ର ଏହାରୁ ତାର ମୁଁକପଣ ମଧୁକଥା କହି ତୃତୀୟ ପହରକୁ ଜବାବ କଲା । ସେହିପରି କୋଟୁଆଳପୁତ୍ରକୁ ଚତୁର୍ଥ ପହରକୁ ଜବାବ କଲା । ଏମାନେ ଟଙ୍କା ସୁନା ବସ୍ତ୍ର ଅଳଙ୍କାର ଯୋଗାଡ଼ରେ ଲାଗିଲେ । ତେଣେ ଲଳିତା ମାଲୁଣୀ ବୁଢ଼ୀକି ଦାଣ୍ଡ ଦୁଆରେ ବସାଇ, ନିଜର ଅଳଙ୍କାର ପଣ ସବୁ ଦେହରୁ ବାହାର କରି ଦେହଯାକ କଳା ବୋଳି ହେଲା, ବାଳ ମୁକୁଳା କରି ବଡ଼ ସିନ୍ଦୁର ମୁଣ୍ଡଲାଟେ ମୁଣ୍ଡରେ ମାରି କଳାକୁସୁମୀ ଶାଢ଼ୀ ପିନ୍ଧି ସାକ୍ଷାତ୍ ଅଭୟା ମୂର୍ତ୍ତି ପରି ଦେଖାଗଲା । ତା'ପର ଉପର ମହଲକୁ ଉଠିବା ଶିଡ଼ିତଳେ ଚୁଲ୍ଲୀ ଉପରେ ତେଲୁଣୀ ବସାଇ ତହିଁରେ କଡ଼ାତେଲ ମୂର୍ଣ୍ଣ କରି, ବସି ବଡ଼ ବରା ଭାଜିବାକୁ ବସିଲା । ଏଣେ ସୂର୍ଯ୍ୟ ଅସ୍ତ ହେବା ଦେଖି ରାଜପୁତ୍ର ତର ତର ହୋଇ ବସ୍ତ୍ର ଅଳଙ୍କାର ପିନ୍ଧି ଦୁଇ ହଜାର ଟଙ୍କା ଧରି ସେଠାରେ ପହଞ୍ଚିବାରୁ ମାଲୁଣୀ ବାଟ ଛାଡ଼ିଦେଲା । ରାଜପୁତ୍ର ଭିତରକୁ ଯାଇ ଦେଖିଲା ଯେ, ଅଭୟା ମୂର୍ତ୍ତିଟିଏ ବସି ପିଠା ଭାଜୁଅଛି । ତାକୁ ଦେଖି ଭୟରେ ଥରି ଥରି ହାତ ଯୋଡ଼ି କହିଲା, ମାଁ ଅଭୟା ! ଦୋଷ କ୍ଷମା କର । ଅଭୟା କହିଲା, ତୁ କାହିଁକି ଏଠାକୁ ଆସିଲୁ ? ରାଜପୁତ୍ର କହିଲା, ଏ ଘରେ ଏକ ବେଶ୍ୟା ମୋତେ ସଙ୍କେତ ଦେଇଥିଲା ? ଅଭୟା କହିଲା, ଆଜି ଘଣ୍ଟାକର୍ଣ୍ଣ ପୂଜା ହେବ । ପୂଜା ସରିଲେ ବେଶ୍ୟାକୁ ଦେଖାଇ ଦେବି । ଏହିଠାରେ ବସିଥାଅ । ପାହି ଭୁଣ୍ଡ କଲେ ଘଣ୍ଟାକର୍ଣ୍ଣ ଖାଇଦେବ । ରାଜପୁତ୍ର ସେହିପରି ବସି ରହିଲା । ପହରେ ଗଲାରୁ ମନ୍ତ୍ରୀପୁତ୍ର ଆସି ଦ୍ୱାରରେ ଡାକିଲା । ରାଜପୁତ୍ର ଶୁଣି କହିଲା, ମୋତେ

ଲୁଚାଇ ଦିଅ । ମନ୍ତ୍ରୀପୁଅ ଜାଣିଲେ ବଡ଼ ହଇଚଇ ହେବ । ଅବୋଲ୍ୟା କହିଲା, ତା ହେଲେ ଅଳଙ୍କାର ଲୁଗାପଟା ବାହାର କରି ରଖିଦେଇ ଏହି ପଥର କୁଣ୍ଡରେ ଲୁଚଯାଅ । ରାଜପୁତ୍ର ସେପରି ସବୁ ରଖିଦେଇ ଖଣ୍ଡେ ଗାମୁଛା ପିନ୍ଧି ପଥର କୁଣ୍ଡରେ ଲୁଚିଲା ବେଳକୁ କଡ଼ା ତେଲରେ ବୁଡ଼ିଗଲା । ଅବୋଲ୍ୟା ଅଳ୍ପ ହସି କହିଲା, ସେ କୁଣ୍ଡ ନୁହେଁ, ଆର କୁଣ୍ଡରେ ପଶିଯାଅ । ରାଜପୁତ୍ର ଆର କୁଣ୍ଡରେ ପଶିଗଲା ବେଳକୁ ଦେହଯାକ ତୁଳା ଲାଗିଗଲା । ଦେହଯାକ ତୁଳାଗୁଡ଼ାକ ଲାଗିଯିବାରୁ ସେ ଗୋଟାଏ ଭୂତ ପରି ଦିଶିଲା । ଅବୋଲ୍ୟା ଯାଇ ଜାନୁରେ ଗୋଟିଏ ଘଣ୍ଟା ବାନ୍ଧିଦେଲା । ଘଣ୍ଟା ବାନ୍ଧିଲେ ଘଣ୍ଟାକର୍ଣ୍ଣ ଖାଇବ ନାହିଁ କହି ବସି ରହିଛି; ଏଣେ ମନ୍ତ୍ରୀପୁଅ ଦେଖିଲା ଯେ, ବାଟରେ ଅବୋଲ୍ୟା ବସିଅଛି । ଆଉ କିବ କଣ ? ଏକବାରେ କାତରୁଡ଼ ହୋଇଗଲା । ଅବୋଲ୍ୟା ତାକୁ ରାଜପୁତ୍ର ପରି ବସାଇ ରଖିଅଛି, ପାତ୍ରପୁତ୍ର ଦ୍ୱାରରେ ଡାକିଲା । ମନ୍ତ୍ରୀପୁତ୍ର କହିଲା, ମୁଁ କଣ କରିବ ? ପାତ୍ରପୁତ୍ର ଦେଖିଲେ ଦାଣ୍ଡରେ ହଇ କରିବ । ଅବୋଲ୍ୟା କହିଲା, କିଛି ଚିନ୍ତା ନାହିଁ ସବୁ ତୁମ୍ଭ ଅଳଙ୍କାର ଲୁଗାପଟା ମୋ ପାଖରେ ରଖି ଦେଇ ଆଗରେ ଥିବା କୋଠରୀରେ ଲୁଚଯାଅ । ମନ୍ତ୍ରୀପୁତ୍ର ସେହିପରି ଲୁଚି ରହିଲା । ଅବୋଲ୍ୟା ମନ୍ତ୍ରୀପୁତ୍ରର ହାତରେ ମେହିପରଣପଣିଟି ଦେଖି ଅତି ଆନନ୍ଦରେ ଯତ୍ନ କରି ରଖିଲା । ଏ ସମୟରେ ପାତ୍ର ପୁତ୍ର ଅବୋଲ୍ୟା ରୂପ ଦେଖି ଭୟରେ ଥରହର ହେଲା । ଅବୋଲ୍ୟା ତାକୁ ମନ୍ତ୍ରୀପୁତ୍ର ପରି ଲୁଚାଇ ରଖିଲା । ଚତୁର୍ଥ ପହର ହେବାରୁ କୋଟୁଆଳ ପୁତ୍ର ଆସି ଭୟରେ ଚକିତ ହୋଇ ରହିଅଛି । କାହାର ଖବର କାହାକୁ ଜଣା ନାହିଁ । ଅବୋଲ୍ୟା ବର୍ତ୍ତିର କଲା କାମ ତ ଶେଷ ହେଲା ଏଥର କଉତୁକ ଦେଖିବା । ଏହା ଭାବି ତାତିଲା କଡ଼ାତେଲ ଚଟୁରେ ଉଦ ରାଜପୁତ୍ର ଉପରକୁ ଫିଙ୍ଗି ଦେଲା । ରାଜପୁତ୍ର ଚିତ୍କାର କରି ଉଠିବାରୁ ଘଣ୍ଟି ଠନ୍ ଠନ୍ ବାଜିଲା । ଅବୋଲ୍ୟା ଡାକ ଦେଲା ପୋ ଘରେ କେ ଅଛ ଶୀଘ୍ର ପଳାଇ ଯାଅ ନୋହିଲେ ଘଣ୍ଟାକର୍ଣ୍ଣ ବାହାରିଅଛି—ଖାଇଦେବ । ଏହା ଶୁଣି ଚାରି ମିତଯାକ ପବନବାଟରେ ପଳାଇ ଗଲେ । ଘଣ୍ଟା ଠଣଠଣ ବାଜୁଥାଏ । କେତେ ଦୂର ଯିବାରୁ ଘଣ୍ଟା ଗଡ ତଳେ ପଡ଼ିଗଲା । ଆଜ

ବାଜିଲା ନାହିଁ । ଘଣ୍ଟାକର୍ଣ୍ଣ ଫେରିଗଲା ଜାଣି ଗୃହେ ମିତ ଚିନ୍ତାଚିନ୍ତି ହୋଇ ଲଜ୍ଜାରେ ଘରକୁ ନ ଯାଇ ପଦ୍ମ ବନରେ ଲୁଚି ରହିଲେ । ଭାବିଲେ ରାତି ହେଲେ ଘରକୁ ଯିବା । ଏଣେ ଲଳିତା ଅପ୍ସରା ରୂପ ଛାଡ଼ି ନିଜ ବେଶରେ ସବୁ ରତ୍ନ ବସ୍ତ୍ର ଧରି ହୀରାବତୀ ରାଣୀ ନିକଟକୁ ଯାଇ ସବୁ ଦେଲା । ହୀରାବତୀ ଲଳିତାକୁ ବିଶ୍ୱାସରେ ନିଜ ନଗର ଭିତରେ ରଖିଲେ ଆଉ ପୁତ୍ରକୁ ପରଶମଣି ନେଇ ଦେଲେ । ରାଜପୁତ୍ର ପଥର ଦେଉଳ ତୋଳାଇ ପରଶମଣି ମନ୍ଦି ଲଗାଇ ଦେବାରୁ ସେ ସୁନା ହୋଇଗଲା । ଏହା ଦେଖି ରାଜା ବଡ଼ ଆଶ୍ଚର୍ଯ୍ୟ ହୋଇ ଜ୍ୟେଷ୍ଠ ପୁତ୍ରକୁ ରାଜସିଂହାସନ ଦେଲେ । ରାଜପୁତ୍ର ଲଳିତାକୁ ଧରି ରାଜ୍ୟରେ ଅଭିଷିକ୍ତ ହେଲେ । ସେହିଦିନୁ ଗୋଟିଏ ଦେଉଳ ଅଧା କାମ ହୋଇ ପଡ଼ିଅଛି । ଏହିଠାରେ ଅବୋଲକରା କାହାଣୀର ପ୍ରଥମ ତରଙ୍ଗ ଶେଷ ହେଲା ।



# ସୁନା ହରିକାଠ କାହାଣୀ

ସେଠାରୁ ସାମନ୍ତ ଆଉ ଅବୋଲକରା ପୁଣି କେତେକ ଦେଶ ପଥ ବହି ଯାଇ ଯାଇ ମାଳବ ଦେଶରେ ପହଞ୍ଚିଲେ । ବେଳ ଦୁଇପହର ହେଲାଣି, ଦେଖିଲେ ଯେ, ଗୋଟିଏ ଦେବୀମନ୍ଦିର ଅଛି, ତାର ନିକଟରେ ଗୋଟିଏ ହ୍ରଦ ଅଛି, ତହିଁରେ ପଦ୍ମଫୁଲ ଫୁଟିଅଛି । ହଂସ, ସାରସ କ୍ରୀଡ଼ା କରୁଅଛନ୍ତି । ସାମନ୍ତ କହିଲେ, ଆଜି ଏହିଠାରେ ରହିବା । ତା ପରେ ଭଣ୍ଡାରୀକି କହିଲେ, ଚଞ୍ଚଳ ସଉଦା କରି ଆଣ । ଭଣ୍ଡାରୀ ସଉଦା କିଣିବାକୁ ଗଲା । ସାମନ୍ତ ସ୍ନାନସନ୍ଧ୍ୟା କରିବାକୁ ଗଲେ । ଏଣେ ଭଣ୍ଡାରୀ ଯାଇ ଦେଖିଲା ଯେ ରାଜାଙ୍କ ସିଂହଦ୍ୱାର ଉପରେ ଗୋଟାଏ ସୁନାର ହରି-କାଠ ନିଶାଣି ହୋଇଅଛି । ତା ଦେଖି ସବୁ ଲୋକଙ୍କୁ ପଚାରିଲା, ଏପରି ହରିକାଠ କାହିଁକି ନିଶାଣି ହୋଇଅଛି । ଲୋକମାନେ କହିଲେ, ଏହାର କାରଣ ଆମ୍ଭେମାନେ କହି ପାରିବୁ ନାହିଁ । ମାତ୍ର ପୂର୍ବରୁ ସେହିପରି ଅଛି । ଏହା ଶୁଣି ଅବୋଲକରା ସଉଦା ଧରି ଆସି ସାମନ୍ତଙ୍କୁ ପଚାରିଲା; ରାଜ ସିଂହଦ୍ୱାରରେ କାହିଁକି ସୁନାର ହରିକାଠ ନିଶାଣି ଦିଆ ହୋଇଅଛି ? ଏହାର କାରଣ ବୁଝାଇ ଦିଅ । ନୋହିଲେ ମୋ ଶିକା ବାଉଁଶି ମୋର, ତୁମ୍ଭ ଲୁଗାପଟା ତୁମର । ଏହା ଶୁଣି ସାମନ୍ତ ଭାବିଲେ; "ଦୁର୍ଜନ ସଙ୍ଗ-ମେଳେଣ ଅକାଳେ ମୃତ୍ୟୁଲକ୍ଷଣଂ ।" ଦୁର୍ଜନ ସଙ୍ଗେ ସଙ୍ଗ ହୋଇଥିଲେ ଅକାଳରେ ମୃତ୍ୟୁ ଘଟେ । ତା ପରେ କହିଲେ; ଅବୋଲକରା କଥା କହିବା ଯେ ଖଲପତ୍ର ତ ଆଣି ନାହୁଁ କିପରି ହେବ ? ଅବୋଲକରା ତତ୍‌କ୍ଷଣେ ବୋଟେ ଡାଳୁଅପତ୍ର ଆଣି ଖଲି ସିଲେଇ କରିବାକୁ ଲାଗିଲା । ସାମନ୍ତ କହିଲେ; ପକା କମଳ ପୋତ ଛତା; ବସ ଅବୋଲକରା କହିବି କଥା । ଏହି ଦେଶରେ ଜଣେ ରାଜା ଥିଲେ । ତାଙ୍କ ପୁତ୍ରର ନାମ ଜୟସେନ । ଦିନେ ଜୟସେନ ଘୋଡ଼ା ଚଢ଼ି ଦେଶାଟନ କରିବାକୁ ବାହାରିଲେ । ସେ ଅନେକ ଦେଶ ପରିକ୍ରମା କରି ଯାଉ ଯାଉ କିରାତସେନ ରାଜାଙ୍କର ନଗର ନିକଟ ସଦର ରାସ୍ତାରେ ଘୋଡ଼ା ଛାଡ଼ି-ଅଛନ୍ତି । କିରାତସେନଙ୍କର କେତକୀ ଗନ୍ଧା ନାମରେ ଗୋଟିଏ କନ୍ୟା

ଥିଲା । ସେ କନ୍ୟା ଫୁଲବଗିଚାର ପିଜୁଳିଗଛ ଉପରକୁ କଉତୁକରେ ଉଠିଯାଇ ପିଜୁଳିଫଳ ଖାଉଥିଲା । ଘୋଡ଼ା ଚଢ଼ି ଯାଉଥିବା ରାଜପୁତ୍ର ଉପରକୁ ଅଧେ ଖାଇଥିବା ପିଜୁଳି ଫଳଟି ପକାଇ ଦେଲା । ରାଜପୁତ୍ର ସେ କନ୍ୟାକୁ ଦେଖି ପଚାରିଲେ, ଏ କନ୍ୟା କାହାର ? ନିକଟରେ ଥିବା ଲୋକମାନେ କହିଲେ, ଏହି ଆମ ଦେଶ ରାଜାଙ୍କର ଝିଅ ! ଏହା ଶୁଣି ଜୟସେନ କହିଲେ, ଏପରି କନ୍ୟାକୁ ବିଭା ହୁଅନ୍ତା, ଦର-ବିଭା ହୋଇ ଛାଡ଼ନ୍ତା, କାନ୍ଦ କନ୍ଦଲୀ କାନ୍ଦନ୍ତେ ପାଚନ୍ତା । ଏହା ଶୁଣି କନ୍ୟା କହିଲା, ଏପରି ପୁରୁଷକୁ ବିଭା ହୁଅନ୍ତା, ଦରବିଭା ହୋଇ ଘରେ ରହନ୍ତା, ବାପଘରେ ଥାଇ ପୁଅ ପାଆନ୍ତା, ପୁଅ ହାତରେ ବାପକୁ ବାନ୍ଧନ୍ତା । କନ୍ୟାର ଉତ୍ତର ବାହାରିବାରୁ ସବୁଲୋକେ ରାଜପୁତ୍ରଙ୍କୁ ଉପହାସ କଲେ । ରାଜପୁତ୍ର ସେ ଅପମାନ ସହି ନ ପାରି ସେହିଠାରୁ କୋପାନ୍ୱିତ ହୋଇ ଫେରିଆସି ନିଜର ରାଜ୍ୟରେ ପ୍ରବେଶ ହେଲେ । କିଛି କାହାକୁ ନ କହି ମନଦୁଃଖରେ ଅପନ୍ତରା ଘରେ ଥିବା ଭଙ୍ଗା ଖଟ ଉପରେ ଅଧୋମୁଖ ହୋଇ ଶୋଇ ରହିଲେ । ପରିବାର ଲୋକେ ଏପରି ଘଟଣା ଦେଖି ରାଜାଙ୍କୁ ସବୁ କହିଲେ । ରାଜା ଯାଇ ପୁତ୍ରକୁ ଆଶ୍ୱାସନା କରି ପଚାରିବାରୁ ରାଜକୁମାର ପୂର୍ବ ବୃତ୍ତାନ୍ତ ପିତାଙ୍କ ଆଗରେ କହିଲେ । ଆଉ କହିଲେ ଯେ, ମୁଁ ସେ ରାଜକନ୍ୟାକୁ ଯାହା କହିଲି ସେପରି କରି ନ ପାରିଲେ ମୋର ଜୀବନରେ ଆଶା ନାହିଁ । ରାଜା ଶୁଣି କହିଲେ, ବାବୁ ! ଏ ସ୍ୱର କଥାକୁ କାହିଁକି ଏତେ ଚିନ୍ତା ? ଆମ୍ଭେ କାଲି ତାର ଯୋଗାଡ଼ ସବୁ କରିଦେବୁଁ । ତୁ ଆନନ୍ଦରେ ଥାଅ । ପୁତ୍ରକୁ ଏପରି କହି ରାଜା ଯାଇ ସଭା କରି ମନ୍ତ୍ରୀମାନଙ୍କୁ କହିଲେ—ଜିରାତସେନ ରାଜାଙ୍କର କେତକୀଗନ୍ଧା ନାମରେ ପରମା ସୁନ୍ଦରୀ କନ୍ୟା ଅଛି । ... ଯୁବରାଜ ଜୟସେନଙ୍କୁ ସେ କନ୍ୟା ବିବାହ କରାଇବା, ଏଥିର ଶୀଘ୍ର ଯତ୍ନ କର । ଏହା ଶୁଣି ମନ୍ତ୍ରୀମାନେ ଆନନ୍ଦରେ ଜିରାତସେନ ଦେଶ ଯାଇ ସେହି କଥାର ଯୋଗାଡ଼ କଲେ । ଉଭୟଙ୍କ ସମ୍ମତିରେ ସେହି କନ୍ୟାକୁ ସେହି ବର ବିବାହ ହେବାର ନିଶ୍ଚୟ ହେଲା । କିଛିଦିନ ମଧ୍ୟେ ମାଳବଦେଶ ରାଜାଙ୍କୁ ଜିରାତସେନ ନିମନ୍ତ୍ରଣ ପଠାଇଥିଲେ । ଯଥା—।

ମାଧବଙ୍କ ସ୍ୱୟମ୍ବର ନୂଆବାରେ ବିଭାଘର ନିଶ୍ଚୟ ହେଲା । ସେଦିନ ଯଥା-ସାଧ୍ୟ ଉତ୍ସବରେ ବର ବରଜାତ୍ର ଦେଇଆସି କନ୍ୟା ଗ୍ରହଣ କରିବେ । ମାଳବଦେଶ ରାଜା ନିମନ୍ତ୍ରଣ ପାଇ ବହୁତ ଉତ୍ସବ କରି ପୁତ୍ରର ବିବାହ କରାଇବାପାଇଁ ବାହାରିଲେ । ଯିବାବେଳେ ଜଣେ ସନ୍ନ୍ୟାସୀ ରାଜାଙ୍କୁ ଡକାଇ ଏକାନ୍ତରେ କହିଲେ, ତୁ ଅମ୍ଭ ସନ୍ନ୍ୟାସୀ ଲୋକ । କଥାଟିଏ କହିବା; ଯତ୍ନକରି ମନେ ରଖିଥିବୁ । ଯେତେବେଳେ ସ୍ୱନରାଜଙ୍କର ବିବାହ ମଣ୍ଡପରେ ହସ୍ତଗ୍ରନ୍ଥି ବନ୍ଧାଯିବ, ସେହିକ୍ଷଣି ମିଛରେ କହିବୁ, ମାଳବଦେଶରେ ଶତ୍ରୁମାନେ ପଶିଗଲେ । ଏହା ଶୁଣି ରାଜା କହିଲା, ଯାହା ଆଜ୍ଞା ହେଲା ସେପରି କରିବି । ଏହାପରେ ରାଜା ବୀରଦତ୍ତଙ୍କ ବଡ଼ାଇ ବିବାହ ଉତ୍ସବରେ କୀର୍ତ୍ତି ଦେଶକୁ ବାହାରିଲେ । କୀର୍ତ୍ତିସେନ ବହୁ ଆଡ଼ମ୍ବରରେ ବାଟବାରଣ କରି ବେଦୀରେ ବରକନ୍ୟା ବସାଇ କୁଳମର୍ଯ୍ୟାଦା ଅନୁସାରେ କର୍ମ ଆରମ୍ଭ କଲେ । କ୍ରମରେ ଆସି ହସ୍ତଗ୍ରନ୍ଥି ପଡ଼ିଗଲା ।-ଏ ସମୟରେ ମାଳବ ଦେଶରୁ ଚର ଆସି ଜଣାଇଲା—ହେ ଦେବ ମହିମା ଗୁହାରି ଶୁଣିବାକୁ ସାବଧାନ ! ମାଳବ ଦେଶରେ ଶତ୍ରୁସୈନ୍ୟ ପଶି ଗ୍ରାମ ପାଟଣା ସବୁ ଲୁଟ କରୁଅଛନ୍ତି । ଏହା ଶୁଣି ମାଳବ ନୃପତି ପୁତ୍ର ସହିତ ନିଜ ଦେଶକୁ ଶୀଘ୍ର ଯାତ୍ରା କଲେ । ରାଜା ଯିବାର ଦେଖି ପାତ୍ର ମନ୍ତ୍ରୀ ସୈନ୍ୟ ଦଳବଳ ଧରି ପଛେ ପଛେ ଦଉଡ଼ିଲେ । କେତେକ ସମୟ ପରେ ସମସ୍ତେ ନିଜ ଦେଶରେ ପହଞ୍ଚିଲେ । ଜୟସେନ ଯାହା କହିଥିଲେ, ସେପରି ଦରବିଭା କନ୍ୟା ଛାଡ଼ି ଆସି ନିଜ ଦେଶରେ ଆନନ୍ଦରେ ରହିଲେ । ତେଣେ କେତକୀଗନ୍ଧା ଏ ଘଟନା ଜାଣିପାରି କାହାକୁ କିଛି ନ କହି ମନେ ମନେ ଚିନ୍ତାକରି ରହିଲା । ଏପରି ଦୁଇ ତିନିବର୍ଷ ବିତିଗଲା । ଦିନେ କେତକୀଗନ୍ଧାର ମାତା କୀର୍ତ୍ତିସେନଙ୍କୁ ଦୁଃଖରେ କହିଲେ—ଦେଖ ବିଭା ନ ସରୁଁ ବର ବେଦୀରୁ ଉଠିଯାଇ ନିଶ୍ଚିନ୍ତେ ରହିଲା, ଶାଶୁ ଶ୍ୱଶୁର ମଧ୍ୟ ବୋହୂକୁ ନେବା କଥା କିଛି ଦିଶୁ ନାହିଁ । ତୁମ୍ଭେ ମଧ୍ୟ ନିଶ୍ଚିନ୍ତ ରହିଅଛ । ଝିଅ ଦରବୁଢ଼ୀ ହୋଇ ରହିଲା । ଏହା ଦେଖି ମୁଁ ଚିନ୍ତାରେ ସଢ଼ି ଯାଉଅଛି । ରାଜା କହିଲେ, ଅମ୍ଭେ ମନ୍ତ୍ରୀ ମୁଖରୁ ଶୁଣିଅଛୁଁ, ଏଥିରେ ତାହାର ଅପରାଧ ନାହିଁ, ଜେମା ଏହା

ହାତରେ ଅର୍ଜିଅଛୁ । ଏହାପରେ କଥାବାର୍ତ୍ତା ହେବାର କେମା ଶୁଣୁଥିଲା । ସେ ସେଠାକୁ ଆସି ହାତ ଯୋଡ଼ କହଲା, ମୋର କଛ ଦୋଷ ନାହିଁ । ମତେ ଦରବଲ୍ଭ ହୋଇ ଛଡ଼ ଯିବା କଥା ସେ ଆଗ କହବାରୁ ମୁଁ ଘେଛେ କହଲ, ବାପଘରେ ଥାଇ ପୁଅ ପାଇ ପୁଅ ହାତରେ ବାପକୁ ବାନ୍ଧିବ୍ା । ସେ ଯାହା କହଥିଲ, ସେପର୍ କଲ୍ଲ । ଏବେ ମୁଁ ଯାହା ମାଗିବ ମତେ ଦଅଗଲେ ମୁଁ କହଥିବା କଥା କର୍ ପାର୍ବ । ରାଜା କହଲେ, ଯେବେ ତୋର୍ ସେପର୍ ହେବ, ତୋର ଯାହା ଇଚ୍ଛା ମାଗ । କେମା କହଲ୍, ପାଞ୍ଚଗୋଟି ସଖୀ, ଦୁଇଟି ତମ୍ବୁ, ଦୁଇଟି ଓଟ, ଗୋଟିଏ କେଲା ବାଉଁଶ, ଆଉ ଜଣେ ବୃଦ୍ଧ ପୁରୁଷ, ରତ୍ନବସ୍ତ୍ର ସହତ ଦଶହଜାର ଟଙ୍କା ଦେଲେ ମୋର କାର୍ଯ୍ୟ ପୂର୍ଣ୍ଣ ହେବ । ଏହା ଶୁଣି ରାଜା ତକ୍ଷଣେ ସେ ସବୁ ଯୋଗାଇ ଦେଲେ । କେତକୀଗନ୍ଧା ସେହଦନଠାରୁ ଯାଇ ସାତଦନରେ ମାଳବ ଦେଶରେ ପ୍ରବେଶ ହେଲ୍ଲ । ମାଳବରାଜାଙ୍କ ଗଡ଼ ସମୀପରେ ଗୋଟିଏ ନଦୀତୀର ତୋଟାରେ ତମ୍ବୁ ଟାଣି ରହଥାଏ । ଏପର୍ କେତେଦନ ଗଲ୍, ତାହାର ପର ଜୟସେନଙ୍କର ପିତା ସ୍ୱର୍ଗଗାମୀ ହୋଇଯିବାରୁ ଜୟସେନ ରାଜା ହେଲେ । ଦନେ ଜୟସେନ ସେହ ନଦୀର ତଳ ଘାଟରେ ସ୍ନାନ କରୁଥିଲେ । ଉପର ଘାଟରେ କେତକୀଗନ୍ଧା ସ୍ନାନ କରୁଥିଲ୍ଲ । ତାର ମୁଣ୍ଡରୁ ବାଳ ଗୋଟିଏ ଛିଡ଼ଗଲ୍ଲ । ସେ ବାଳଟି ଗେଣ୍ଡାଭିତରେ ପୁରାଇ ପାଣିରେ ଭସାଇ ଦେଲ୍ଲ । ଗେଣ୍ଡାଟି ଭସି ଭସି ଯାଉଥିଲ୍ଲ । ଦୈବରେ ସେ ଗେଣ୍ଡାଟି ଜୟସେନ ଦେଖିଲେ । ହାତରେ ଧର୍ ଦେଖିଲେ ଯେ, ତା ଭିତରେ ବାଳ ଗୋଟିଏ ଅଛି । ମାପିଲେ ଯେ ହେଲ୍ଲ ବାରହାତ ଲମ୍ବ । ଦେଖି ବିଚାର କଲେ, ଯାହା ମୁଣ୍ଡରେ ଏପର୍ ବାଳ ଅଛି ସେ ସ୍ତ୍ରୀ କପର୍ ସୁନ୍ଦରୀ ହୋଇ ନ ଥିବ ? ଏହା ଭାବ ଉପରବେଲା ଘୋଡ଼ା ଚଢ଼ି ନଦୀ ତୀରେ ତୀରେ ଉପରକୁ ଗଲେ । ତମ୍ବୁ ପାଖକୁ ଯାଇ ଦେଖିଲାବେଲକୁ କେତକୀଗନ୍ଧା ଦବ୍ୟବେଶ ହୋଇ ଚଉକିରେ ବସିଥିଲ୍ଲ । ଏହାଙ୍କୁ ଦେଖି ଉଠିପାର୍ ତମ୍ବୁ ଭିତରକୁ ଚାଲିଗଲ୍ଲ । ଜୟସେନ ରାଜା କେତକୀଗନ୍ଧାର ସୁନ୍ଦର ରୂପ ଦେଖି ତାକୁ ମୂର୍ଚ୍ଛି ପାର୍ଲେ ନାହିଁ । ଭାବଲେ ସେ ବାଳଗୋଟିକ ଏହ କନ୍ୟାର । ଏହାକୁ କୌଶଳ କର୍ ନିଶ୍ଚୟ ନେବ । ଯଥା :—

ସୁସିଦ୍ଧାନ୍ନଂ ପକ୍ୱଫଳଂ ନାର୍ଯ୍ୟଃ ପ୍ରଥମଯୌବନଂ ।
ପ୍ରାପ୍ତମାତ୍ରେଣ ଭୁକ୍ତବ୍ୟଂ ନାତ୍ର କାର୍ଯ୍ୟା ବିଚାରଣା ॥

ସିଦ୍ଧଅନ୍ନ, ପକ୍ୱଫଳ, ସ୍ତ୍ରୀର ନବଯୌବନ ଏହା ପାଇବା ମାତ୍ରେ କିଛି ବିଚାର ନ କରି ଭୋଗ କରିବ । ଏହା ଭାବି ଗୋଟିଏ ଦାସୀକୁ ଡାକି ପଚାରିଲେ, ତୁମ୍ଭର ଘର କେଉଁ ଦେଶରେ ? କାହିଁକି ଏଠାରେ ତମ୍ବୁ ଟାଣି ରହିଅଛ, ଆଉ ଚଉକିରେ ବସିଥିବା କନ୍ୟାଟି କିଏ ? ଦାସୀ କହିଲା, ଆଗ ତୁମ୍ଭର ପରିଚୟ ପାଇଲେ ପଛେ ଆମ୍ଭର ପରିଚୟ ଦେବୁଁ । ରାଜା କହିଲେ, ଆମ୍ଭେ ଏହି ମାଳବ ଦେଶର ରାଜା, ଆମ୍ଭ ନାମ ଜୟସେନ । ଦାସୀ ମନରେ ହର୍ଷ ହୋଇ କହିଲା, ପୁନା ସହରରେ ଆମ୍ଭର ଘର, ଜାଡରେ କେଲା, ନାଚ କରିବାପାଇଁ ଆସିଥିଲୁଁ । ଦୈବରେ ସେ କନ୍ୟାଟି ଏହିଠାରେ ନବଯୌବନା ହେଲା । ଆମ୍ଭର କୁଳମର୍ଯ୍ୟାଦା ଅନୁସାରେ ସେ ଜଣେ ଉତ୍ତମ ପୁରୁଷକୁ ଗାନ୍ଧାର ମତରେ ବିବାହ ହୋଇ ତାଙ୍କ ସହିତ କିଛିକାଳ ବିହାର କଲେ ଦେଶକୁ ଯିବୁଁ । ଏହା ଶୁଣି ରାଜା ମନେ ମନେ ଭାବିଲେ—

ବିଷାଦପ୍ୟମୃତଂ ଗ୍ରାହ୍ୟମମେଧ୍ୟାଦପି କାଞ୍ଚନଂ ।
ନୀଚାଦପ୍ୟୁତ୍ତମାଂ ବିଦ୍ୟାଂ ସ୍ତ୍ରୀରତ୍ନଂ ଦୁଷ୍କୁଳାଦପି ॥

ବିଷରୁ ଅମୃତ, ଅମେଧ୍ୟରୁ ସୁବର୍ଣ୍ଣ, ନୀଚଠାରୁ ଉତ୍ତମ ବିଦ୍ୟା ଏବଂ ଅକୁଳୀନଠାରୁ ସ୍ତ୍ରୀରତ୍ନ, ଏହା ଗ୍ରହଣ କରିବ । ଏ ତ ସ୍ତ୍ରୀରତ୍ନ, ଏହାଠାରେ ଦୋଷ ନାହିଁ । ଏପରି ଭାବି କହିଲେ, ଆମ୍ଭେ ବିଭା ହେବୁ । ଦାସୀ କହିଲା, ଯେବେ ବିଭା ହେବ, ଆମ୍ଭେମାନେ ଏଠାରେ ଥିବାଯାକ ଉତ୍ତମରୂପେ ଅନ୍ନ, ବସ୍ତ୍ର, ଅଲଙ୍କାର ଦେଉଥିବ । ଯିବାକାଳରେ ସେ କନ୍ୟାଟି ଆଜୀବନ ସୁଖରେ ରହିବା ଭଳି ଧନ ଦେବ । ରାଜା ସେ କଥାରେ ସମ୍ମତ ହୋଇ କରି ବିଭା ହେଲେ ।

ଉଦ୍ୟମଂ ସାହସଂ ଧୈର୍ଯ୍ୟଂ ବଳଂ ବୁଦ୍ଧି ପରାକ୍ରମଃ ।
ଷଡ଼େତେ ଯତ୍ର ତିଷ୍ଠନ୍ତି ତତ୍ର ଦେବୋଽପି ଶଙ୍କତେ ॥

ଉଦ୍ୟମ, ସାହସ, ଧୈର୍ଯ୍ୟ, ବଳ, ବୁଦ୍ଧି, ପରାକ୍ରମ ଏ ଛଅଟି ଯାହାଠାରେ ଅଛି ତାଙ୍କୁ ଦେବତା ହେଲେ ମଧ୍ୟ ଡରନ୍ତି । ଦେଖ, ବୁଦ୍ଧିବଳରେ ସେ କନ୍ୟା ରାଜାଙ୍କୁ ବଶ କଲା । ଏହାପରେ ରାଜା ନିଜ ରାଣୀ ବୋଲି ନ ଚିହ୍ନି କେଳୁଣୀ ମନେ କରି ଆନନ୍ଦରେ ତା ସହିତ ପ୍ରତିଦିନ କ୍ରୀଡ଼ା କଲେ । ଏପରି କେତେ ଦିନ ଯିବାରୁ କେତକୀ ଗନ୍ଧା କନ୍ୟାର ଗର୍ଭରେ ଦୁଇମାସ ହେଲା । ଏହା ଜାଣି ପାରି ସେ କନ୍ୟା ରାଜାଙ୍କୁ କହିଲା—ଆମ୍ଭେ ଏଥର ନିଜ ଦେଶକୁ ଯିବୁଁ । ତୁମ୍ଭ ସକାଶରୁ ମୋର ଦୁଇମାସ ଗର୍ଭ ହୋଇଅଛି । ଏଥିରୁ ପୁତ୍ର ଜନ୍ମ ହେଲେ ସେ ପୁତ୍ର ତୁମ୍ଭର ବୋଲି ଯେପରି ଚିହ୍ନି ପାରିବ ସେପରି ଗୋଟିଏ ସଙ୍କେତ ହୋଇଥାଉ । ଏହା ଶୁଣି ରାଜା ଆନନ୍ଦରେ ଅଳ୍ପ ହସି ନିଜର ନାମ ଲେଖା ହୋଇଥିବା ରତ୍ନ-ମୁଦ୍ରିକାଟି ଅଙ୍ଗୁଳିରୁ ବାହାର କରି ଦେଇ କହିଲେ, ଏ ମୁଦ୍ରିକାଟି ଯାର ହସ୍ତରେ ଦେଖିବୁଁ ସେହି ଆମ୍ଭର ପୁତ୍ର ବୋଲି ଜାଣି ପାରିବୁଁ । ଏହା କହି ବହୁତ ଧନରତ୍ନ ଦେଇ ବିଦାୟ କଲେ । କେତକୀଗନ୍ଧା ସଖୀମାନଙ୍କୁ ଧରି ପିତାଙ୍କ ନଗରରେ ଯାଇ ପ୍ରବେଶ ହେଲେ । ହୋଇଥିବା ସଙ୍ଗତି ପିତା ଓ ମାତାଙ୍କ ଆଗରେ କହିଲେ । ଏପରି ଦଶମାସ ଯାଆନ୍ତେ କେତକୀଗନ୍ଧାର ଗୋଟିଏ ପୁତ୍ର ଜନ୍ମ ହେଲା । ସେ ପିଲାର ରୂପ କନ୍ଦର୍ପ ପରି ଦିଶିବାରୁ ମନ୍ମଥ ବୋଲି ନାମ ଦେଲେ । ଏହା ଶୁଣି ପ୍ରଜାମାନେ ବିଚାର କଲେ, ରଜାଝିଅ ବେଧ ପକାଇ ପିଲା ଜନ୍ମ କରିଅଛି । ମାତ୍ର ରାଜା ଭୟରେ ଆଗରେ କହି ପାରନ୍ତି ନାହିଁ । ଏପରି ପାଞ୍ଚ, ସାତବର୍ଷ ଚାଲିଗଲା । ରାଜକୁମାର ମନ୍ମଥକୁ ଦଶବର୍ଷ ହେଲା ବେଳେ ଚଟଶାଳୀରେ ପାଠ ପଢୁଥିଲା । ପିଲାମାନେ କଳି କଲେ, ଜଣେ ପିଲା ମନ୍ମଥକୁ କହିଲା ଅଣବାପୁଅ ପିଲାର ଗୁଡ଼ର ବଡ଼ । ଏହା ଶୁଣି ମନ୍ମଥ ରାଗାନ୍ୱିତ ହୋଇ ଯାଇ ମାତାଙ୍କୁ ପଚାରିଲା, ମୋର ବାପା କାହାନ୍ତି ? ମା କହିଲେ, ତୋର ବାପାଙ୍କୁ ଚିହ୍ନିବାର ବୟସ ହୋଇ ନାହିଁ । ଆଉ କିଛିଦିନ ପରେ କହି ଦେବି । ମନ୍ମଥ କହିଲା, ନାଁ ଏହିକ୍ଷଣି କହିବୁ ନୋହିଲେ ଏହି ଖଣ୍ଡାରେ ତୋର ମୁଣ୍ଡ କାଟିବି । ଏହା ଦେଖି ଭୟ କରି ମା କହିଲେ,

ତୋର ବାପ ମାଳବ ଦେଶ ରାଜା ଜୟସେନ । ମନ୍ମଥ କହିଲା, ତୁମ୍ଭେ ପାଟଦେବୀ ଛାଡ଼ି ବାପଘରେ କାହିଁକି ରହିଅଛ ? ଏହା ଶୁଣି ମା ପୁତ୍ର ଆଗରେ ପୂର୍ବ କଥାସବୁ କହିଲେ । ମନ୍ମଥ କହିଲା ପିତା ମତେ କିପରି ଚିହ୍ନି ପାରିବେ ? ମା ତତ୍‌କ୍ଷଣେ ରତ୍ନ ମୁଦ୍ରିକାଟି ଦେଇ କହିଲେ, ଏ ମୁଦ୍ରିକା ଦେଖିଲେ ତାଙ୍କର ପୁତ୍ର ବୋଲି ଜୟସେନ ରାଜା ଚିହ୍ନିବେ । ମନ୍ମଥ ମାତାଙ୍କଠାରୁ ସେ ମୁଦ୍ରିକା ଆଉ ହଜାରେ ଟଙ୍କା ଧରି ମାଳବ ଦେଶକୁ ଯାତ୍ରା କଲେ । ଯାଉ ଯାଉ ଘୋର ଅରଣ୍ୟ ମଧ୍ୟରେ ବନ ଦେବତା ଭ୍ରମଣ କରୁଥିଲେ । ତାଙ୍କୁ ଦେଖି ରାଜପୁତ୍ର ନମସ୍କାର କରି ଦଣ୍ଡ ପ୍ରଣାମ କଲେ । ବନଦେବତା ସନ୍ତୁଷ୍ଟ ହୋଇ କହିଲେ, ତୋର ମନୋରଥ ସିଦ୍ଧହେଉ, ତୁ ଯେତେ ପ୍ରକାର ରୂପ ହେଲେ ତତେ କେହି ଚିହ୍ନି ପାରିବେ ନାହିଁ । ଏହା କହି ଅନ୍ତର୍ଦ୍ଧାନ ହେଲେ । ରାଜପୁତ୍ର ସେଠାରୁ ଯାଇ ଘୋଡ଼ାଟି ବନ୍ଦିକରି ଦେଇ ଗୋଟିଏ ମହାଜନ ପୁତ୍ର ପରି ବେଶ ଧରି ଯାଉ ଯାଉ ବାଟରେ ଦେଖିଲେ, ଜଣେ ଗଉଡ଼୍‌ଣୀ ଦହି ହାଣ୍ଡି ମୁଣ୍ଡରେ ଧରି ଯାଉଥିଲା । ଗୋଟିଏ ଢେଲା ଧରି ସେ ଦହି ହାଣ୍ଡି ଉପରେ ପକାଇ ଦେଲେ । ଦହି ହାଣ୍ଡିଟି ଭାଙ୍ଗି ଯିବାରୁ ଗଉଡୁଣୀ ବହୁତ ଗାଳିଦେଲା । ରାଜପୁତ୍ର କହିଲେ, ମତେ ଗାଳି ଦେ ନାହିଁ ତୋର ଦହି ଯେତେ ମୂଲ୍ୟ ହୁଅନ୍ତା ତାର ଦ୍ୱିଗୁଣ ମୋଠାରୁ ନେ । ଆଜଠାରୁ ତୁ ମୋର ଧର୍ମର ମାତା ହେଲୁ । ମୋ ସଙ୍ଗରେ ଆ, ମୁଁ ତୋତେ ପୋଷିବି । ଏହା କହି ତାହାକୁ ବସ୍ତ୍ର ଅଳଙ୍କାର ଦେଇ କହିଲେ, ମା ଚାଲ ଏହି ବଜାରକୁ ଯିବା, ମାତ୍ର ମୁଁ ଯାହା କହୁଥିବି ତୁ ସବୁ କଥାକୁ ହଁ କରୁଥିବୁ । ଗଉଡୁଣୀ ସେପରି କରିବ ବୋଲି କହିଲା । ଦୁହେଁ ଯାଇ ବଣିଆ ଦୋକାନରେ ପହଞ୍ଚିଲେ । ମନ୍ମଥ ବଣିଆ ଦୋକାନଠାରୁ ବହୁମୂଲ୍ୟ ରତ୍ନହାର କେତେଗୋଟି ଆଣି ଗଉଡୁଣୀକି ପଚାରିଲା, ମା ଏହାକୁ କିଣିବା କି ? ମା କହିଲା, ହଁ । ମନ୍ମଥ ବଣିଆକୁ କହିଲା ଏହାର ମୂଲ୍ୟ କେତେ ? ବଣିଆ କହିଲା, ଦଶହଜାର ଟଙ୍କା । ମନ୍ମଥ କହିଲା, ମୋର ବସା ଏହି ନିକଟରେ, ଆଉ ମୋର ମା ଏଠାରେ ଥାଉ । ମୁଁ ବସାକୁ ଯାଇ ଦେଖାଇବି । ରଖିବାର ଇଚ୍ଛା ହେଲେ

ଟଙ୍କା ଧରି ନୋହିଲେ ମାଲ ଧରି ଏହିକ୍ଷଣି ଫେରି ଆସିବ । ବଣିଆ ତାର କଥାକୁ ବିଶ୍ୱାସ କରି କହିଲା, ମା ଥାନ୍ତୁ ତୁମ୍ଭେ ଯାଇ ଚଞ୍ଚଳ ଆସ । ମନ୍ମଥ ଚାଲିଗଲା, ଗଉଡ଼୍ଣୀ ମା ହୋଇ ସେହିଠାରେ ବସିଥାଏ । ଦେଖୁ ଦେଖୁ ମନ୍ମଥ ଆଉ ଆସିଲା ନାହିଁ । ରାତି ଦୁଇଘଡ଼ି ଆସି ହେଲା । ଦୋକାନୀ ଗଉଡ଼୍ଣୀକି କହିଲା, ତୋର ପୁଅ କାହିଁ ? ସେ କହିଲା, କି ପୁଅବା ? ସେଇଟା କୁଆଡ଼ର ଗୋଟେ ଆସିଥିଲା । ମୋର ଦହିହାଣ୍ଡି ଭାଙ୍ଗି ଦେଲା । ମୁଁ ଗାଳିମନ୍ଦ କରିବାରୁ ମା ବୋଲି ସାଥିରେ ମତେ ଡାକି ଆଣିଥିଲା । ଏହା ଶୁଣି ମହାଜନ ଗଉଡ଼୍ଣୀକି ବହେ ବାଡ଼ିଆ ବାଡ଼ି କଲା । ପରେ କାନ ମୁଣ୍ଡା ଅଉଁସି ରହିଲା । ଏଣେ ମନ୍ମଥ ଗୋଟିଏ କାଗଜରେ ଲେଖିଲା, ମୁଁ ଡକାଇତ ସର୍ଦ୍ଦାର ଏ ଦେଶକୁ ଆସିଲି । ବଣିଆକୁ ଠକିଲି, ଅନ୍ଧ୍ର ଦେଶଯାକ ଠକିବି ଏବଂ ରାଜାଙ୍କ ଶ୍ରୀ ଅଙ୍ଗରେ ଘାଉଡ଼ କରିବି । ଏପରି ଦେଉଳ କାନ୍ଥରେ ଛପି ଦେଇ ଚାଲିଗଲା । ଏହା ଦେଖି ଶୁଣି ଦେଶଯାକ କୋଳାହଳ ଲାଗିଲା । ମନ୍ମଥ ସେଠାରୁ ଯାଇ ମାଲୁଣୀ ଘରେ ପହଞ୍ଚିଲା । ଗଲାବେଳେ ଧୂର୍ତ୍ତବେଶ ଛାଡ଼ି ମାଳି ବେଶ ଧରି କହିଲା, 'ମାଉସି, ମୁଁ ତୋ ଘରେ କିଛିଦିନ ରହିବି । ମାଲୁଣୀର ଅନ୍ୟ କେହି ନ ଥିବାରୁ ତାକୁ ଆଦରରେ ରଖିଲା । ତା ପରେ ରାଜା ଡକାଇତର କଥା ଶୁଣି ନାଗରା ଦେଲେ, ଯେ ଡକାଇତକୁ ଧରି ଆଣିବ, ସେ ପାଞ୍ଚଶହ ଟଙ୍କା ପୁରସ୍କାର ପାଇବ । ଏହା ଶୁଣି ଜଣେ ବାବାଜୀ କହିଲେ, ଆମେ ଏହି ଚୋରକୁ ଧରିବୁଁ । ଏପରି କହି ସେଦିନ ରାତିରେ ଚୋର ଧରିବାକୁ ସାବଧାନ ହେଲେ । ମାଲୁଣୀ ଏହା ଶୁଣି ଆସି ଘରେ ମନ୍ମଥ ଆଗରେ କହିଲା, ବାପା ଘରୁ କୁଆଡ଼େ ଯିବୁ ନାହିଁ । ଆଜି ରାତିରେ ସାଧୁଚରଣ ବାବାଜୀ ଚୋର ଧରିବେ । ମନ୍ମଥ ଏପରି ଶୁଣିଥିଲା, ରାତି ହେଲାରୁ ଏକ ବାବାଜୀ ବେଶ ଧରି ସାଧୁଚରଣଦାସଙ୍କ ନିକଟରେ ପ୍ରବେଶ ହୋଇ କହିଲା, ମହାରାଜ ! ଦଣ୍ଡ ପ୍ରଣାମ । ବାବାଜୀ କଲ୍ୟାଣ କରି କହିଲେ, ତୁମ୍ଭେ କିଏ ? ସେ କହିଲା, ମୁଁ ପରା ତୁମ୍ଭର ଶିଷ୍ୟ । ପାଞ୍ଚବର୍ଷ ହେଲା ତୀର୍ଥ କରିବାକୁ

ଯାଉଥିଲା । ବାବାଜୀ କହିଲେ, ଆଜି ଆମ୍ଭେ ଚୋର ଧରିବୁଁ । ତୁ ଯା, କାଲି ଆସିଲେ ଅନ୍ୟ କଥା ବୁଝିବା । ମନ୍ମଥ କହିଲା, ବାବା, ତୁମ୍ଭେ ଚୋର ଧରି ପାରିବ ନାହିଁ । ମୁଁ ସେ ବିଷୟରେ ଉପାୟ ଜାଣେ । ବାବାଜୀ କହିଲେ, କଅଣ ଜାଣୁ କହ । ମନ୍ମଥ କହିଲା, ଗୋଟିଏ ଅଣ୍ଡିରା ଦାମୁଡ଼ି ଆଣି ଆଗରେ ଥିବା ତାଳ ଗଛରେ ବାନ୍ଧିଦେଇ ତାର ଗୋଡ଼କୁ ତୁମ୍ଭର ଅଣ୍ଟାକୁ ଡୋରି ଗୋଟିଏ ବାନ୍ଧିଦେଇ ଥାଅ । ମନୁଷ୍ୟ ଦେଖିଲେ ଦାମୁଡ଼ି ଚଞ୍ଚଳ ହେବ । ତା ହେଲେ, ଡୋରି ଟାଣି ହୋଇ ତୁମ୍ଭର ନିଦ ଭାଙ୍ଗିଯିବ । ସାଧୁଚରଣ ବାବାଜୀ ଏହି ଉପାୟଟି ଭଲ ମଣି ସେପରି କଲେ । ମନ୍ମଥ ସେଠାରୁ ଆସି ଘାସ କେରାଏ ଧରି ସେ ଦାମୁଡ଼ି ପାଖକୁ ଯାଇ ତାର ବେକରୁ ବନ୍ଧା ଫିଟାଇ ଦେଇ ପଛରୁ ଚମକାଇ ଦେଲା । ଦାମୁଡ଼ି ପଳାଇ ଯିବାରୁ ବାବାଜୀ ଟାଣି ହୋଇ ଯିବାରେ ଅଣ୍ଟୁ ଗଣ୍ଠି ଛିଡ଼ିଗଲା । ବିକଳ ହୋଇ ରଡ଼ି କରିବାରୁ କେତେକ ଲୋକ ଉଠି ଆସି ଫିଟାଇ ଦେଲେ । ସେଦିନ ବାବାଜୀର ଏ ଦଶା ରାଜା ଶୁଣି ଚଉକିଦାରକୁ କହିଲେ ତୁ ଏ ଚୋରକୁ ଧର; ନୋହିଲେ ତୋର ମୁଣ୍ଡ କାଟ ହେବ । ଚଉକିଦାର କଣ କରିବ ? ଭୟରେ ଆଜି ଧରିବି ବୋଲି କହିଗଲା । ମନ୍ମଥ ମାଲୁଣୀଠାରୁ ଏ କଥା ଶୁଣି ସହରରେ ଚୌକିଦାର ବେଶ ଧରି ଗଲା । ଯେଉଁଠାରେ ରାଜାଙ୍କ ଚୌକିଦାର ଜଗିଥିଲା, ସେଠାକୁ ଯାଇ କହିଲା, ଭାଇ, ମୁଁ ତୋତେ ଖୋଜି ଖୋଜି ଆସୁଅଛି । ଖାଉଡ଼ିଆ ମହାଜନ ଅନେକ ମାଲ ନେଇ ଯାଉ ଅଛନ୍ତି । ଚାଲ ଚେଷ୍ଟା କରିବା । ଚୌକିଦାର କହିଲା, ତୁ କିଏ ? ମନ୍ମଥ କହିଲା, ଚିହ୍ନିପାରୁ ନାହୁଁ ? ମୁଁ ତୋର ଶଳା ପରା । ଏହା ଶୁଣି ଚୌକିଦାର କହିଲା, ଆଜି ରାଜାଙ୍କର ଆଜ୍ଞା ଅଛି ଚୋର ଧରିବାକୁ । ମୁଁ ଯାଇ ପାରିବି ନାହିଁ । ମନ୍ମଥ କହିଲା; ତେବେ ମୁଁ ମଧ୍ୟ ତୋ ସଙ୍ଗେ ଥିବି, ଦୁହେଁଯାକ ଚୋର ଧରିବା । ଏପରି କହି ଦୁହେଁ ମିଶି ଜଗିଲେ । କିଛିକ୍ଷଣ ପରେ ଚୌକିଦାରକୁ ନିଦ୍ରା ଲାଗିବାରୁ ମନ୍ମଥ କହିଲା; ମୁଁ ଜଗିଅଛି ତୁ ଦଣ୍ଡେ ଶୋଇ ଯା । ଏହା ଶୁଣି ଚୌକିଦାର ଶୋଇଲା । ତାକୁ ନିଦ୍ରା ହେବାର ଦେଖି ମନ୍ମଥ ହରିକାଠ

ତା'ର ହାତ ଏବଂ ଗୋଡ଼ରେ ଦେଇ ଚାଲିଗଲା । ସକାଳେ ଦେଖାଗଲା ଚୌକିଦାର ଚୋର କଣ ଧରିବ; ନିଜେ ହରିକାଠରେ ପଡ଼ିଅଛି । ଏ ଘଟନା ଦେଖି ରାଜା ମନ୍ତ୍ରୀଙ୍କି କହିଲେ; ଦେଖ ଏ ଚୋର ବହୁତ ଉପଦ୍ରବ କଲା; ଆଜି ତୁମ୍ଭେ ତାକୁ ଧର । ନୋହିଲେ ଦେଶ ଉଜୁଡ଼ି ଯିବ । ମନ୍ତ୍ରୀ ପ୍ରତିଜ୍ଞା କରି କହିଲେ; ଆଜି ମୁଁ ନିଶ୍ଚେ ସେ ଚୋରକୁ ଧରିବି । ଏହାପରେ ମନ୍ମଥ ମାଲୁଣୀକି ପଚାରିଲା; ମାଉସି ! ଆଜି ରଜା-ଘର ଖବର କଣ ? ମାଲୁଣୀ କହିଲା; ଆଜି ମନ୍ତ୍ରୀ ଚୋର ଧରିବେ । ମନ୍ମଥ ମାଲୁଣୀଠାରୁ ମନ୍ତ୍ରୀର ହାଲ ସବୁ ବୁଝି ସନ୍ଧ୍ୟାବେଳେ ମନ୍ତ୍ରୀର ନାତି ରୂପ ଧରି ଆସିଲା । ମନ୍ତ୍ରୀର ପୁଅ ନ ଥିବାରୁ ନାତିକି ପୋଷ୍ୟପୁତ୍ର କରିବାକୁ ଆଣିଥିଲେ । ସେ ନାତି ମନ୍ତ୍ରୀ ଘରେ ନ ରହି ନିଜ ଘରକୁ ଚାଲି ଯାଉଥାଏ । ଏ ହେତୁରୁ ମନ୍ତ୍ରୀଙ୍କର ତାଠାରେ ବଡ଼ ଆଗ୍ରହ ଥାଏ । ମନ୍ମଥ ଏହା ଜାଣି ସେହି ନାତି ବେଶ ଧରି ମନ୍ତ୍ରୀ ଘରକୁ ଯାଇ କହିଲା, ଆଇ, ଅଜା କୁଆଡ଼େ ଗଲେ ? ଆଇ ନାତି ବୋଲି ଜାଣି ଆନନ୍ଦରେ କହିଲା, ବାବୁ, ଅଜା ଚୋର ଧରିବାକୁ ଯାଇଅଛନ୍ତି । ତୁ ଭୋଜନ କରି, ଅଜା ପଛକୁ ଆସିବେ । ନାତି କହିଲା, ନା ଅଜାଙ୍କୁ ନ ଦେଖିଲେ ମୁଁ ରହିବ ନାହିଁ । ଏହା ଶୁଣି ଆଇ ଚାକରକୁ ଡାକି କହିଲେ—ଏହାକୁ ନିଅ, ଅଜାଙ୍କୁ ଦେଖାଇ ଆଣିବ । ଚାକର ନାତିକି ସଙ୍ଗେ ନେଇ ମନ୍ତ୍ରୀ ପାଖରେ ପହଞ୍ଚିଲା । ମନ୍ତ୍ରୀ ପଚାରିଲେ, ଏଠାକୁ କାହିଁକି ଆସିଲୁ ? ଚାକର କହିଲା, ନାତିଙ୍କି ସାଥିରେ ଦେଇ ସାନ୍ତାଣୀ ପଠାଇ ଅଛନ୍ତି । ମନ୍ତ୍ରୀ ଏହା ଶୁଣି ଚାକରକୁ ପଠାଇ ଦେଇ ନାତିକୁ ପାଖରେ ରଖିଲେ । ଅଜା ନାତି ଦୁହେଁ କଥାବାର୍ତ୍ତା ହେଉ ହେଉ ନାତି ପଚାରିଲା, ଅଜା ! ତୁମେ ଚୋରକୁ କପରି ବାନ୍ଧିବ ମତେ ଶିଖାଇ ଦିଅ । ଅଜା ନାତିକି ଶିଖାଉ ଶିଖାଉ ମନ୍ମଥ କୌଶଳରେ ମନ୍ତ୍ରୀକି ବାନ୍ଧି ପକାଇ କହିଲା, ମୁଁ ସେହି ଚୋର । ମୋତେ ଧରିବାକୁ ଜଗତରେ କେହି ନାହିଁ । କାଲି ରାଜା ଶ୍ରୀଅଙ୍ଗରେ ଘାଉ କରିବ । ଏହା କହି ମାଲୁଣୀ ଘରକୁ ଚାଲିଗଲା । ଆରଦିନ ସକାଳେ ଦେଖିଲେ ବେଳକୁ ମନ୍ତ୍ରୀ ବନ୍ଧା ହୋଇ ପଡିଅଛନ୍ତି । ଏହା ଦେଖି ରାଜାଙ୍କର ସାହସ

ଉଡ଼ିଗଲେ । ବିଚାର କଲେ, ଏ ଚୋରର ନିଶ୍ଚୟ ଅମ୍ଭଙ୍କୁ ଆଘାତ କରିବ । ତା ପରେ ଧୈର୍ଯ୍ୟ ଧରି କହିଲେ, ଆଜି ଅମ୍ଭେ ଚୋରକୁ ଧରିବା । ଉତ୍ତର, ଦକ୍ଷିଣ ଓ ପଶ୍ଚିମ ଦିଗରେ ସୈନ୍ୟମାନେ ଜଗିଥିବେ । ଅମ୍ଭେ ନିଜେ ପୂର୍ବ ଦିଗରେ ଜଗିବୁ । ଚୋରକୁ ଧରିଲାବେଳେ, ବିଗୁଲ ବଜାଇଲେ ଚାରିପାଖରୁ ସୈନ୍ୟ ମାଡ଼ି ଆସିବେ । ଏପରି ନିଶ୍ଚୟ ହେବାର ମାଲୁଣୀ ଶୁଣିଥିଲା । ଘରକୁ ଯାଇ ମନ୍ମଥ ଆଗରେ ସବୁ କହିଲା । ମନ୍ମଥ ସନ୍ଧ୍ୟାବେଳେ ଯାଇ ପୂର୍ବଦିଗରେ ଗୋଟିଏ ଧୋବା ବେଶ ଧରି ଲୁଗା କାଚୁଥାଏ । ରାଜା ସେହି ଦିଗରେ ଅନୁସନ୍ଧାନ କରି ଯାଉ ଯାଉ ରାତି ଦୁଇ ପ୍ରହରକୁ ଦେଖିଲେ ଯେ ଜଣେ ଲୋକ ଲୁଗା କାଚୁଅଛି । ତା ପାଖକୁ ଯାଇ ପଚାରିଲେ, ତୁ ରାତିରେ କାହିଁକି ଲୁଗା କାଚୁଅଛୁ ? ଧୋବା ଦଣ୍ଡପ୍ରଣାମ କରି କହିଲା, ମହାରାଜ ! କେହି ଜଣେ ଲୋକ ଆଠଦିନକୁ ଥରେ ଲୁଗା କାଚିବାକୁ ମୋତେ ଦେଇଯାଏ । ଆଉ କହିଥାଏ ଯେ, ରାତିରେ ଲୁଗା ସଫା କରିଦେବୁ । ମୁଁ ସେହିଠାରୁ ଲୁଗା ନେଇ ତୋର ମଜୁରି ଦେଇ ଯାଉଥିବି । ଏପରି କେତେ ଥର ମୁଁ ତାର କାମ କଲିଣି । ବେଶୀ ମଜୁରି ପାଇବାରୁ ରାତିରେ କାମ କରୁଅଛି । ଆଉ ମହାରାଜ କାହିଁକି ଏକାକୀ ଏଠାକୁ ବିଜେ କଲେ ? ଏହା ଶୁଣି ରାଜା କହିଲେ, ଦେଶରେ ଡକାଇତ ପଶି ବହୁତ ଉପଦ୍ରବ କଲା । ତାକୁ ଧରିବା ପାଇଁ ଅମ୍ଭେ ଆସିଅଛୁଁ । ଧୋବା କହିଲା, ସେ ଲୋକଟା ଡକାଇତ ହୋଇଥିବ । ନୋହିଲେ କାହିଁକି ରାତିରେ ଲୁଗା କାଚିବାକୁ କହୁଅଛି ? ଆଉ ଗ୍ରାମ ନାମ କିଛି କହୁ ନାହିଁ । ରାଜା କହିଲେ, ତାକୁ ଧରି ପାରିବୁ କି ? ଧୋବା କହିଲା, ସେ ବଡ଼ ବଳିଷ୍ଠ, ମୁଁ ଧରି ପାରିବି ନାହିଁ । ରାଜା କହିଲେ, ତେବେ କିପରି ଧରାପଡ଼ିବ ? ଧୋବା କହିଲା, ଦୋଷ କ୍ଷମା ହେଲେ ମୁଁ ଗୋଟିଏ ଉପାୟ କହିଦେବି । ରାଜା କହିଲେ, କିଛି ଭୟ ନାହିଁ । ଧୋବା କହିଲା, ଆପଣ ସବୁ ପୋଷାକପାକ ଦେହରୁ ବାହାର କରି କିଛି ଦୂର ଛଡ଼ାରେ ଥୋଇ ଦିଅନ୍ତୁ । ମୁଁ ସେଠାରେ ଜଗିବସିଥିବି । ମୁଁ ଲୁଗାକାଚିଲାପରି ଆପଣ ଲୁଗା କାଚୁଥାନ୍ତୁ, ଅଉ ଘଣ୍ଟାକ ମଧ୍ୟରେ ସେ ଲୋକ ଲୁଗା ନେବା

ପାଇଁ ଅସିବ । ଅସିଲାକ୍ଷଣି ବାନ୍ଧି ପକାଇବେ । ଏହା ଶୁଣି ରାଜା ବିଚାର କଲେ, ଅସମୟରେ ନାରାୟଣ ରଥ ପାଦ ଧରିଥିଲେ । ଆମ୍ଭେ ଧୋବାପରି ଲୁଗା କାଚିବା, ନୋହିଲେ ଡକାଇତକୁ ଧରି ଧାଇବୋ ନାହିଁ । ଏପରି ଭାବି ଲୁଗା କାଚିଲେ । ରାଜା ଧୋବା ବେଶ ଧରି ଲୁଗା କାଚୁଅଛନ୍ତି । ଏଣେ ମନ୍ମଥ ରାଜାଙ୍କ ପୋଷାକସବୁ ପିନ୍ଧି ପକାଇ ପାକିଠରୁ ବିଗୁଲ ବାହାର କରି ବଜାଇ ଦେବାରୁ ଗୃହୁଦାଗରୁ ସୈନ୍ୟମାନେ ଦୌଡ଼ି ଆସିଲେ । ମନ୍ମଥ ସ୍ୱଭାବରେ ରାଜପୁତ୍ର, ପୁଣି ରାଜାଙ୍କ ପୋଷାକ ପିନ୍ଧିବାରୁ ସବୁ ଲୋକେ ତାଙ୍କୁ ରାଜା ବୋଲି ଜାଣିଲେ । ଏ ସମୟରେ ସେହି ରାଜପୁତ୍ର ଆଜ୍ଞା ଦେଲେ, ଏହି ଲୁଗା କାଚୁଥିବା ଲୋକ ଡକାଇତ । ଏହାକୁ ଚଞ୍ଚଳ ବାନ୍ଧ । ଏହା ଶୁଣି ସୈନ୍ୟମାନେ ଦୌଡ଼ିଯାଇ ରାଜାଙ୍କୁ ବାନ୍ଧି ପକାଇଲେ । ରାଜା ବନ୍ଧନରେ ପଡ଼ି କହିଲେ, ମୁଁ ଡକାଇତ ନୁହେଁ, ମୁଁ ରାଜା । ଏପରି କହିଲେ ମଧ୍ୟ ସେମାନେ ବାନ୍ଧି ଟାଣି ନେଇଗଲେ । ମନ୍ମଥ ହାତୀ ଉପରେ ବସି ବୀରବାଜା ବଜାଇ ଗଲେ । ରାଜସିଂହଦ୍ୱାରରେ ସମସ୍ତେ ପ୍ରବେଶ ହେଲେ । ସେଠାରେ ମନ୍ମଥ ବିଚାର କଲେ, ମାତାଙ୍କ ସତ୍ୟ ରକ୍ଷା ହେଲା । ଏଣିକି ପିତାଙ୍କୁ ବନ୍ଧନରେ ରଖିଲେ ଧର୍ମହାନି ହେବ । ଏହା ଭାବି ନିଜେ ପିତାଙ୍କ ବନ୍ଧନ ଫିଟାଇ ତାଙ୍କ ପାଦତଳେ ପଡ଼ିଲେ । ରାଜା ଏହା ଦେଖି ପଚାରିଲେ, ତୁମ୍ଭେ କିଏ ? ତୁମ୍ଭର ବୀରତ୍ୱ, ବୁଦ୍ଧିଶୀଳତା ଏବଂ ଉଦାରତା ଦେଖି ଆମ୍ଭେ ବଡ଼ ସନ୍ତୋଷ ହେଲୁ । ରାଜପୁତ୍ର ହାତଯୋଡ଼ି କହିଲେ, ମୁଁ ତୁମ୍ଭର ଔରସ ପୁତ୍ର, ମୋର ନାମ ମନ୍ମଥ । ମାତାଙ୍କ ସତ୍ୟରକ୍ଷା କରିବାପାଇଁ ତୁମ୍ଭଙ୍କୁ ବାନ୍ଧିପକାଇଲି । ଏହା ଶୁଣି ରାଜା କୋପ ହୋଇ କହିଲେ, ତୁ ଆମ୍ଭର କାପରି ଔରସ ପୁତ୍ର ? ଏହାର ପରିଚୟ ଦେ, ନୋହିଲେ ତୋର ଶିରଚ୍ଛେଦ କରିବି । ଏହା ଶୁଣି ମନ୍ମଥ କହିଲା, ମୋର ପିତା ମାଳବଦେଶ ରାଜା ଜୟସେନ । ମାତାଙ୍କ ନାମ କେତକୀଗନ୍ଧା । ଜୟସେନ ଦେଶାନ୍ତରୀ ହୋଇ କନ୍ୟା ଛାଡ଼ି ଆସିଥିଲେ । କେତକୀଗନ୍ଧା ପିତା ଘରଠାରୁ ବେଲୁଣୀ ବେଶଧରି ମାଳବ ଦେଶକୁ ଆସି ନିଜ ପତି ଜୟସେନଙ୍କ

ଔରସରେ ମନେ ଜନ୍ମ କରିଅଛନ୍ତି । ଏହା କହି ରତ୍ନ ମୁଦ୍ରିକାଟି ରାଜାଙ୍କୁ ଦେଲେ । ରାଜା ନିଜର ମୁଦ୍ରିକା ଚିହ୍ନି ମନ୍ମଥକୁ କୋଳରେ ବସାଇ କହିଲେ, ବାବୁ, ତୋର ମାତାଙ୍କୁ ଅମ୍ଭେ ହାରିଲୁ । ତୋତେ ଧନ୍ୟବାଦ ଦେଲୁ । ଏହାପରେ ପାତ୍ର ମନ୍ତ୍ରୀମାନଙ୍କୁ କହିଲେ, ଚାଲ ଏହିକ୍ଷଣି ଯାଇ ଅମ୍ଭ ପାଟମହାଦେଈ କେତକୀଗନ୍ଧାଙ୍କୁ ଘେନି ଆସିବା । ଏହା କହି ସେଠାରୁ ସଂଗ୍ରେ ଯାଇ କର୍ଣ୍ଣାଟଦେଶରେ ପ୍ରବେଶ ହେଲେ । ଜୟସେନ ରାଜା ନିଜ ଭାର୍ଯ୍ୟା କେତକୀଗନ୍ଧାଙ୍କୁ କହିଲେ, ତୁମ୍ଭଙ୍କୁ ଅମ୍ଭେ ହାରିଲୁ, ଏବେ ଚାଲ ଅମ୍ଭ ରାଜ୍ୟକୁ ଯିବା । କେତକୀଗନ୍ଧା କହିଲେ, ଯଦି ମୋତେ ହାରିଲ ତେବେ ତୁମ୍ଭର ବନ୍ଧନ ହେବାର ସମସ୍ତ ଲୋକ ଜାଣିବେ, ଏଥିପାଇଁ ଗୋଟିଏ ହରିକାଠ ସୁନାରେ ତିଆରି କରି ସିଂହଦ୍ୱାର ଉପରେ ରଖାଇବ । ରାଜା ସେ କଥାକୁ ଅଙ୍ଗୀକାର କରି ପୁନଃ ଭାର୍ଯ୍ୟା ଦଳବଳ ଘେନି ସ୍ୱରାଜ୍ୟକୁ ପ୍ରତ୍ୟାଗମନ କଲେ । ସେ ଦିନୁଁ ସୁନାର ହରିକାଠ ନିଶାଣ ରହିଅଛି । ଏହିଠାରେ ଅବୋଲକର କାହାଣୀର ଦ୍ୱିତୀୟ ତରଙ୍ଗ ଶେଷ ହେଲା ।



# ପାର ଓ ବରଡ଼ି କଥା

ସେଠାରୁ ସାମନ୍ତ ଓ ଅବୋଲକର କେତେଦୂର ଯାନ୍ତେ ବାଟରେ ଅବୋଲକର ଦେଖିଲା ଗୋଟିଏ ପାରକୁ ବରଡ଼ି ମାରଦେଇ ତାକୁ ମୁଣ୍ଡିଆ ମାରୁଛି । ଆସି ସାମନ୍ତଙ୍କୁ ପଚାରିଲା, ବରଡ଼ି ତ ପାରକୁ ମାଇଲା, ନ ଖାଇ ମୁଣ୍ଡିଆ ମାରୁଅଛି କାହିଁକି ? ଏହା ଶୁଣି ସାମନ୍ତ କହିଲେ ଖରାବେଳ ହୋଇଅଛି, ଏହି ଗଛମୂଳକୁ ଚାଲ । ପକା କମ୍ବଳ ପୋତ ଛଡା—ବସ ଅବୋଲକରା କହିବା କଥା । ଏ ଦେଶର ନାମ ପ୍ରତି-ଷ୍ଠାନପୁର । ପୂର୍ବ କାଳରେ ଏ ଦେଶରେ ବୀରବାହୁ ନାମକ ଜଣେ ରାଜା ଥିଲେ । ତାଙ୍କର ପୁତ୍ର ଦୁହିତା କିଛି ନ ଥିଲେ । ଏ ହେତୁରୁ ରାଜା ବଡ଼ ଦୁଃଖରେ ଥାନ୍ତି । କେତେକ ଦିନ ଯିବାପରେ ପୁଷ୍କର ଦାସ ନାମରେ ଜଣେ ବାବାଜୀ ଆସି ରାଜାଙ୍କ ନିକଟରେ ପହଞ୍ଚିଲେ । ରାଜା ତାଙ୍କୁ ଦେଖି ବଡ଼ ଆଦର କରି ବସା ସଞ୍ଚା ଦେଇ ରଖାଇଲେ । ଦିନେ ବାବାଜୀଙ୍କୁ ରାଜା ପଚାରିଲେ, ଆଜି ପର୍ଯ୍ୟନ୍ତ ଆମ୍ଭର ପୁତ୍ର ସନ୍ତାନ ହୋଇ ନାହିଁ, ଏ ହେତୁ ଆମ୍ଭେ ବଡ଼ ଦୁଃଖିତ ଅଛୁଁ । ଏହା ଶୁଣି ବାବାଜୀ କହିଲେ, ଆମ୍ଭେ ଉପାୟ ଦେଲେ ସାତଗୋଟି ପୁତ୍ର ହେବେ । ମାତ୍ର ବଡ଼ ପୁତ୍ରଟି ଚେଲା କରିବାକୁ ମତେ ଦେବ । ଆଉ ଛ'ଗୋଟି ପୁତ୍ର ତୁମ୍ଭର ରହିବେ । ଏପରି ସତ୍ୟକଲେ ଆମ୍ଭେ ଉପାୟ ଦେବୁ । ଏହା ଶୁଣି ରାଜା ଓ ରାଣୀ ଏକାନ୍ତରେ ବିଚାର କଲେ, ଆମ୍ଭର ତ ଅଦୌ ପୁତ୍ର ନାହିଁ । ବାବାଜୀ ଯଦି ଉପାୟ ବଳରେ ସାତଗୋଟି ପୁତ୍ର ଦେବେ, ତା ହେଲେ ଗୋଟିଏ ନେଲେ ମଧ୍ୟ ଛଅଟି ତ ରହିବେ; ଏଥିରେ ମନ୍ଦ କଣ ? ଏପରି ଭାବି ବାବାଜୀଙ୍କି ଡକାଇ କହିଲେ, ବାବାଜୀ ! ଯଦି ଆମ୍ଭର ନିଶ୍ଚୟ ତୁମ୍ଭ ଉପାୟରେ ସାତପୁତ୍ର ହେବେ, ଜ୍ୟେଷ୍ଠପୁତ୍ରକୁ ତୁମ୍ଭଙ୍କୁ ଦେବାର ନିବାର ସତ୍ୟ । ବାବାଜୀ ରାଜା ଓ ରାଣୀଙ୍କଠାରୁ ଏପରି ଶୁଣି ମନ୍ତ୍ର ଯନ୍ତ୍ର ଜଡ଼ି ବୁଟି ଆଣି ରାଣୀକୁ ଖାଇବାକୁ ଦେଲେ । କିଛିଦିନ ରହି ନିଜ ଆଶ୍ରମକୁ ଗଲେ । କେତେ ଦିନ ପରେ ରାଣୀ ଗର୍ଭବତୀ ହୋଇ ଗୋଟିଏ ପୁତ୍ର ଜାତ କଲେ । ସେ ପୁତ୍ରର ହସ୍ତ ଓ

ପାଦରେ ଶଙ୍ଖ ଚକ୍ର ଆଉ ବହୁତ ଶୁଭ ଚିହ୍ନମାନ ଥିଲା । ଏହା ଦେଖି ଜ୍ୟୋତିଷମାନେ କହିଲେ, ଏ ପୁତ୍ର ମହାବଳବାନ୍ ଏବଂ ତେଜବନ୍ତରେ ମହାପୂର୍ଣ୍ଣ ହୋଇ ଦିଗ୍‌ବିଜୟ କରିବ । ଏହାର ନାମ ବୀରପ୍ରତାପ ହେଲା । ଏହି ମତେ କ୍ରମେ କ୍ରମେ ରାଜାଙ୍କର ଆଉ ଛଅ ପୁତ୍ର ଜନ୍ମ ହେଲେ । ବାବାଜୀ ପଥା ସମୟରେ ଆସି ରାଜାଙ୍କ ନିକଟରେ ପ୍ରବେଶ ହେଲେ । ତାଙ୍କୁ ଦେଖି ରାଜାଙ୍କର ସାହାସ ଉଡ଼ିଗଲା । ସେ ତର୍ଭୁର କଲେ, ବୀର ପ୍ରତାପ ପରି ପୁଅକୁ ଏ ନେଇଯିବେ । ନ ହେଲେ ଅସତ୍ୟ ହେବ, ଆଉ ମୋର ସର୍ବନାଶ ହେବ । ଏପରି ଭାବନା ଜାଣି ବାବାଜୀ କହିଲେ, ମହାରାଜ ! ତର୍ଭୁରରେ କିଛି ପ୍ରୟୋଜନ ନାହିଁ । ପୂର୍ବରେ ଯାହା ସତ୍ୟ କରିଛ, ସେ କଥା ବିଚାରି ବଡ଼ ପୁଅଟିକୁ ଆଣି ଶୀଘ୍ର ଦେଲେ ଆମ୍ଭେ ଚାଲିଯିବୁ । ରାଜା ଏହା ଶୁଣି ଭିତରକୁ ଯାଇ ରାଣୀ ଆଗରେ ବାବାଜୀ କହିବାର କଥା କହିଲେ । ରାଣୀ ତାହା ଶୁଣି ମୂର୍ଚ୍ଛିତା ହୋଇପଡ଼ିଲେ । ଚେତାପାଇ ପୁଣି କାନ୍ଦିବାକୁ ଲାଗିଲେ । ରାଜା ଆଉ ଅନ୍ତଃପୁର ଲୋକେ ମଧ୍ୟ ରୋଦନ କଲେ । ଏପରି କୋଳାହଳ ଶୁଣି ବୀରପ୍ରତାପ କହିଲେ, ମୋର ମାତା ପିତା ଆଉ ସମସ୍ତ ଗୁରୁଜନମାନଙ୍କୁ ନମସ୍କାର । ମୋ ସଂକାଶେ କେହି ଶୋକ କର ନାହିଁ । ମୋର କର୍ମରେ ଯାହା ଅଛି ମୁଁ ନିଶ୍ଚୟ ତାହା ଫଳ ଭୋଗ କରିବି । ଯଥା :—

ସ ହି ଗଗନବିହାରୀ କଲ୍ମଷଧ୍ୱଂସକାରୀ,
ଦଶଶତକରଧାରୀ ଜ୍ୟୋତିଷାଂ ମଧ୍ୟଚାରୀ,
ବିଧୁରପି ବିଧିଯୋଗାଦ୍‌ଗ୍ରସ୍ୟତେ ରାହୁଣାସୌ,
ଲିଖିତମପି ଲଲାଟେ ପ୍ରୋଜ୍‌ଝିତୁଂ କଃ ସମର୍ଥଃ ।

ଦେଖ ଚନ୍ଦ୍ର ଆକାଶରେ ବିହାର କରନ୍ତି, ପୁଣି ଅନ୍ଧକାର ନାଶ କରନ୍ତି, ସହସ୍ର କିରଣ ଧାରଣ କରନ୍ତି, ଗ୍ରହ ନକ୍ଷତ୍ର ମଧ୍ୟରେ ଶ୍ରେଷ୍ଠ ଅଟନ୍ତି, ଏପରି ବ୍ୟକ୍ତି ଦୈବଯୋଗରୁ ରାହୁଗ୍ରାସରେ ପଡ଼ି ବଡ଼ କଷ୍ଟ ପାଉ ଅଛନ୍ତି । ଆଉ ସାଧାରଣ ଲୋକର ଲଲାଟ ଲେଖନ କିଏ ଲିଭାଇ ପାରିବ ? ଏ ହେତୁରୁ ମୋତେ ଶୀଘ୍ର ଦିଅ, ବାବାଜୀ ଯାଆନ୍ତୁ । ମୋ

ପ୍ରତି ତୁମ୍ଭେମାନେ ଦୟା ରଖିଥାଅ । ମାତା ପିତାଙ୍କର ସତ୍ୟ ପାଳନ ହେଉ । ଏଥିରେ ହେଲେ ତୋର ସମସ୍ତ ମଙ୍ଗଳ ହେବ । ଏହା ଶୁଣି ସମସ୍ତେ ଆନନ୍ଦିତ ହୋଇ ରାଜା ରାଣୀ ଦୁହିଙ୍କ ଅନୁମତିରେ ବୀରପ୍ରତାପ କୁମରକୁ ନେଇ ପୁଷ୍କର ଦାସ ବାବାଜୀଙ୍କୁ ସମର୍ପଣ କଲେ । ବାବାଜୀ ପୁତ୍ରକୁ ପାଇ ସଙ୍ଗରେ ଧରି ନିଜ ଆଶ୍ରମକୁ ଚାଲିଗଲେ । ଆଶ୍ରମରେ ବୀରପ୍ରତାପକୁ ସବୁ ଶାସ୍ତ୍ର ପଢ଼ାଇଲେ । ଏହା ପରେ ସମସ୍ତ ଧନଭଣ୍ଡାର, ଆଉ ଅନ୍ୟାନ୍ୟ ଯାବତୀୟ କାର୍ଯ୍ୟ ବୀରପ୍ରତାପ ହସ୍ତରେ ସମର୍ପଣ କରିଥାନ୍ତି । ମାତ୍ର ଦେବୀ ମନ୍ଦିର ଚାବିଟି ବାବାଜୀ ନିଜେ ରଖିଥାନ୍ତି । ଏପରି କେତେଦିନ ଚାଲିଗଲା । ଏ ସମୟରେ ସେହି ଦେଶରେ ଜଣେ ବ୍ରାହ୍ମଣ ତୀର୍ଥ କରି ଯିବାକୁ ମନ କଲେ । ସେ ବ୍ରାହ୍ମଣର ଭାର୍ଯ୍ୟା ମରି ଯାଇଥାଏ । ଦୁଇଟି ପୁତ୍ର ଥିଲେ । ସେ ଦୁଇ ପୁତ୍ରଙ୍କୁ ସଙ୍ଗେ ଧରି ବ୍ରାହ୍ମଣ ପୁଷ୍କର ଦାସ ବାବାଜୀଙ୍କ ନିକଟକୁ ଯାଇ କହିଲେ, ମହାରାଜ, ଆମ୍ଭେ ତୀର୍ଥ କରିବାକୁ ଯାଉଅଛୁଁ । ବାବାଜୀ କହିଲେ, ତୁମ୍ଭର ପୁତ୍ର ଯୋଡ଼ିକ ଆମ୍ଭେ ପାଳନ କରି ରଖିଥିବୁ, ମାତ୍ର ତୁମ୍ଭେ ତୀର୍ଥକରି ଫେରି ଆସିଲେ ତୁମ୍ଭ ଇଚ୍ଛାରେ ଗୋଟିଏ ପୁତ୍ର ନେବ । ଆଉ ପୁତ୍ରଟି ଆମ୍ଭେ ଚେଲା କରିବୁ । ବ୍ରାହ୍ମଣ ବିଚାର କଲେ, ଏ ବାବାଜୀ ଯଦି ପିଲାଯୋଡ଼ିକ ପ୍ରତିପାଳନ କରି ରଖିଥିବେ, ତାହାହେଲେ ସେ ଗୋଟିଏ ରଖି ଚେଲା କରିବେ । ଆମ୍ଭେ ଗୋଟିଏ ବ୍ରତ କରି କୁଳରକ୍ଷା କରିବା । ଏପରି ଭାବି ପିଲାଯୋଡ଼ିକ ବାବାଜୀଙ୍କୁ ଦେଇ ତୀର୍ଥ କରିବାକୁ ଚାଲିଗଲେ । ବାବାଜୀ ସେ ବ୍ରାହ୍ମଣ ପିଲାଯୋଡ଼ିକୁ ରଖି ବିଦ୍ୟା ପଢ଼ାଇଲେ । ସେଥିରୁ ବଡ଼ ପିଲାଟି ବଡ଼ ମୂର୍ଖ, ତାକୁ ପାଠଶାସ୍ତ୍ର କିଛି ଆସେ ନାହିଁ । ଆଉ ସାନ ପିଲାଟି ବଡ଼ ବିଚକ୍ଷଣ । ସେ ସମସ୍ତ ବିଦ୍ୟାରେ ପାରଙ୍ଗମ ହେଲା । ଏହା ଦେଖି ବାବାଜୀ ଭାବିଲେ, ଏଥିରୁ ବଡ଼ଟିକି ବହୁତ ରତ୍ନ ଅଳଙ୍କାର ଦେଇଥିବା । ବ୍ରାହ୍ମଣ ଦେଖିଲେ ଲୋଭରେ ସେ ବଡ଼ଟିକି ନେଇଯିବ । ସାନ ପିଲାଟି ପଣ୍ଡିତ, ସେ ଆମ୍ଭର କାର୍ଯ୍ୟକୁ ଆସିବ । ଏହା ଭାବି ସେପରି କରି ରଖିଥାଏ । ଏହାପରେ ବୀରପ୍ରତାପ ନାମକ ରାଜପୁତ୍ର ବ୍ରାହ୍ମଣର ସାନ ପିଲାକୁ ମିତ ବସାଇ ଏକ ସ୍ଥାନରେ ବିଦ୍ୟା ପଢ଼ାଇ ଅତି ଆଦର

କରୁଥାଏ । ଏପରି କେତେଦିନ ଗଲା । ଦିନେ ବାବାଜୀ ପ୍ରୟାଗ ମେଳାକୁ ଯିବାପାଇଁ ବାହାର କରି ବୀରପ୍ରତାପକୁ ଡାକି କହିଲେ, "ବାବା, ଆମ୍ଭେ ପ୍ରୟାଗ ମେଳାକୁ ଯାଉଅଛୁଁ, ଆଠ ଦିନରେ ଫେରି ଆସିବୁଁ । ତୁ ମଠବାଡ଼ି ଯତ୍ନରେ ରକ୍ଷା କରିଥିବୁ । ଏହା କହି ସବୁ ଘରର ଚାବିକାଠି ଦେଲେ, କେବଳ ଦେବୀଗୃହର ଚାବିଟି ନିଜେ ରଖିଲେ । ଆଉ କହିଲେ, ବାବା, ତୁମ୍ଭେ ସବୁ କରିବ; ମାତ୍ର ଦେବୀଘର କେବେହେଲେ ଫିଟାଇ ଦେବ ନାହିଁ । ଏପରି କହି ବାବାଜୀ ଚାଲିଗଲେ ।

ଏଣେ ବୀରପ୍ରତାପ ଦୁଇଦିନ ଯାଏ ସବୁକାର୍ଯ୍ୟ ବାବାଜୀ କହିବା ପ୍ରକାରେ କରୁଥାଏ । ଆରଦିନ ବିଚାର କଲା, ବାବାଜୀ ଦେବୀଘରେ ଏଡ଼େ ମାଲ କଣ ରଖିଅଛି, ଆଜି ଦେଖିବି । ଏପରି ଭାବି, କୋଲପ ଭାଙ୍ଗି ଦେଖିଲାବେଳକୁ ଛଅଗୋଟି ମୁଣ୍ଡ ମାଳହୋଇ ଝୁଲୁଥିଲେ । ରାଜପୁତ୍ରକୁ ଦେଖି ଠହ ଠହ ହସିଲେ । ରାଜପୁତ୍ର ମଧ୍ୟ ସେପରି ହସିଲା । ଏହା ଦେଖି ମୁଣ୍ଡମାଳ ପଚାରିଲେ, ତୁ କାହିଁକି ହସୁଅଛୁ ? ରାଜପୁତ୍ର କହିଲା, ତୁମ୍ଭେ ହସିବାରୁ ମୁଁ ମଧ୍ୟ ହସିଲି । ମୁଣ୍ଡମାଳ କହିଲେ, ଆମ୍ଭେ ଛଅଜଣ ଏହି ମଠରେ ତୋପରି ଅଧିକାର କରିଥିଲୁଁ । ଏବେ ମୁଣ୍ଡମାଳ ହୋଇଅଛୁ । ଏଥର ବାବାଜୀ ଫେରିଲେ, ତୋତେ ଏବଂ ସେ ବ୍ରାହ୍ମଣର ସାନ ପିଲାକୁ ଏହି ଦେବୀ ନିକଟରେ ବଳିଦେଇ ତୁମ୍ଭ ଦୁହିଙ୍କର ମୁଣ୍ଡ ଆମ୍ଭ ସଙ୍ଗେ ମିଶାଇ ଅଷ୍ଟବେତାଳ ସାଧିବ । ଏହା ଶୁଣି ବୀରପ୍ରତାପର ଏକବାରେ ସାହସ ଉଡ଼ିଗଲା । ସେ ହାତଯୋଡ଼ି କହିଲା, ହେ ଭାଇ-ମାନେ, ଏଥିର କଣ ଉପାୟ ଜଣାଥିଲେ କହିଦିଅ । ତୁମ୍ଭର ବହୁତ ଧର୍ମ ହେବ । ଆଉ ମୁଁ ଜୀବନରୁ ରକ୍ଷା ପାଇଲେ, ତୁମ୍ଭମାନଙ୍କୁ ବେତାଳରୁ ମୋକ୍ଷ କରିଦେବି । ମୁଣ୍ଡମାଳ କହିଲେ, ଯେଉଁ ବ୍ରାହ୍ମଣ ତୀର୍ଥକୁ ଯାଇଥିଲେ, ସେ କାଲିଠାରୁ ଆସିଲେଣି । ତୁ ଯାଇ ସେ ବ୍ରାହ୍ମଣଙ୍କୁ କହିବୁ, ଧନ ଲୋଭରେ ସେ ବଡ଼ ପୁଅକୁ ନେବେ ନାହିଁ । ସାନ ପୁଅକୁ ନେଲେ ବାବାଜୀ କପଟରେ ନାନାରୂପ ଧରି କଷ୍ଟଦେଇ ତାକୁ ଆଣିବାକୁ ଯିବ । ସାନ ପିଲା ବହୁତ ବିଦ୍ୟା ଜାଣେ, ସେ ଅବଶ୍ୟ ବାବାଜୀକ

ମାରଦେବ । ତାହାହେଲେ ତୁମ୍ଭେ ଆମ୍ଭେ ସମସ୍ତେ ରକ୍ଷା ପାଇବା । ଏହା ଶୁଣି ବୀରପ୍ରତାପ ସେ ଘର ଗୃହ ବନ୍ଦକରି ତକ୍ଷଣେ ସେ ବୃଦ୍ଧ ବ୍ରାହ୍ମଣ ପାଖକୁ ଯାଇ ଏ ସମସ୍ତ କଥା କହିଲା । ବ୍ରାହ୍ମଣ ଏହା ଶୁଣି କେବଳ ସାନପୁଅକୁ ନେବାର ମନେ ରଖିଥାଏ । ଏ ସମୟରେ ବାବାଜୀ ଆସି ମଠରେ ପହଞ୍ଚିଲେ । ତାଙ୍କୁ ଦେଖି ବ୍ରାହ୍ମଣ କହିଲେ, ଆମ୍ଭେ ତୀର୍ଥ କରି ଫେରି ଆସିଲୁଁ । ଆପଣ ଦୟାକରି ଗୋଟିଏ ପୁଅ ମତେ ଦିଅନ୍ତୁ । ବାବାଜୀ କହିଲେ, ତୁମ୍ଭର ଯାହାକୁ ଇଚ୍ଛା ହେଉଅଛି ସେ ପୁଅକୁ ନିଅ । ବ୍ରାହ୍ମଣ ତ ପୂର୍ବରୁ ଉପଦେଶ ପାଇଥିଲେ; ଅଳଙ୍କାରକୁ ଲୋଭ ନ କରି ସାନପୁଅକୁ ସଙ୍ଗେ ନେଇ ଚାଲିଗଲେ । ଏହା ଦେଖି ବାବାଜୀ ହତାଶ ହୋଇ ଗୋଟିଏ କାକରୂପ ଧରି ପଛେ ପଛେ ଯାଉଥାଏ । କେତେ ବାଟ ଗଲା ପରେ ବ୍ରାହ୍ମଣ ପିଲା କହିଲା, ବାପା ଦେଖ, ଏଠାରେ କୁକୁଡ଼ାଯୁଦ୍ଧ ହେଉଅଛି, ମୁଁ ଗୋଟିଏ କୁକୁଡ଼ା ହେବି । ମତେ ଟ ୫୦୦୯କୁ ବିକି କରିବ, କୁକୁଡ଼ାଟି ଦେବ, କେବେ ମାତ୍ର ଡୋରଟି ଦେବ ନାହିଁ । ଚାରି ପାଞ୍ଚଦିନ ପରେ ସେହି ଡୋରଟି ହାତରେ ଧରି ମୋର ନାମଧରି ଡାକି ଦେଲେ ମୁଁ ନିଜରୂପ ହୋଇ ବାହାରି ଆସିବି । ଏହିପରି କହି ସେହି-କ୍ଷଣି କୁକୁଡ଼ା ହୋଇଗଲା । ବ୍ରାହ୍ମଣ ସେ କୁକୁଡ଼ାକୁ ନେଇ କୁକୁଡ଼ା ଯୁଦ୍ଧ ସ୍ଥାନରେ ପ୍ରବେଶ ହୁଅନ୍ତେ, ଖେଳବାଲାମାନେ ଡାକିଲେ, ଆଣ ତୁମ୍ଭ କୁକୁଡ଼ା ସହିତ ଯୁଦ୍ଧ କରାଇବା । ବ୍ରାହ୍ମଣ ହେଉ କହି କୁକୁଡ଼ା ଗୋଡ଼ରେ କ୍ଷୁର ବାନ୍ଧିଦେଲା । ଖେଳ ସ୍ଥାନରେ ଯେତେ କୁକୁଡ଼ା ଥିଲେ ସବୁଯାକଙ୍କୁ ସେହି କୁକୁଡ଼ା ମାରିଦେଲା । ଏହା ଦେଖି ଖେଳବାଲାମାନେ ଟ ୫୦୦୯ ଦେଇ ବ୍ରାହ୍ମଣଠାରୁ ସେ କୁକୁଡ଼ାଟି କିଣିନେଲେ । ତିନିଦିନ ପରେ ଡୋରଟି ଧରି ବ୍ରାହ୍ମଣ ପୁଅ ନାମ ଧରି ଡାକିଦେବାରୁ ତତ୍କ୍ଷଣେ ପୁଅ ବାହାରି ଆସିଲା । ସେଠାରୁ ବାପପୁଅ ଦୁହେଁ ଚାଲିଗଲେ । ବାବାଜୀ ପଛା ସେହିପରି ଯାଉଥାଏ । କେତେଦୂର ଗଲାପରେ ବ୍ରାହ୍ମଣପିଲା ଗୋଟିଏ ଘୋଡ଼ା ହୋଇଗଲା । ବ୍ରାହ୍ମଣ କଳାଅରଟି ହାତରେ ରଖି ହଜାରେ ଟଙ୍କାକୁ ଘୋଡ଼ାଟି ବିକି କରିଦେଲା । ପୁଣି କିଛିଦିନ ପରେ କଳାଅର ହାତରେ ଧରି ପୁଅ ନାମ ଧରି ଡାକି ଦେବାରୁ ବ୍ରାହ୍ମଣପିଲା ନିଜ ରୂପ

ହୋଇ ଚାଲିଆସିଲା । ସେଠାରୁ ପିତା ଓ ପୁତ୍ର ଯାଉଥିଲେ । ବାଟରେ ବ୍ରାହ୍ମଣପିଲା ଏକ ହାତୀ ହୋଇଗଲା । ଏ ସମୟରେ ପୁଷ୍କରଦାସ ବାବାଜୀ ଆସି ବ୍ରାହ୍ମଣକୁ କହିଲା, କେତେ ଟଙ୍କା ନେଲେ ହାତୀଟି ଦେବ ? ବ୍ରାହ୍ମଣ କହିଲେ, ତିନିହଜାର । ବାବାଜୀ ତତ୍‌କ୍ଷଣେ ତିନିହଜାର ଟଙ୍କା ଦେଇ କହିଲେ, ଅଙ୍କୁଶଟି ଦିଅ । ବ୍ରାହ୍ମଣ କହିଲେ, ଅଙ୍କୁଶ ଦେବି ନାହିଁ । ବାବାଜୀ କହିଲେ ହାତୀର ମୂଲ୍ୟ ତିନିହଜାର ଦେଲି ଆଉ ତିନି ହଜାର ଦେଉଅଛି, ଅଙ୍କୁଶଟି ଦିଅ । ବ୍ରାହ୍ମଣ ତ ବଡ଼ ଲୋଭୀ । ତିନି ହଜାର ଟଙ୍କା ଲୋଭରେ ଅଙ୍କୁଶଟି ଦେଇ ପକାଇଲା । ବାବାଜୀ ଅଙ୍କୁଶ ପାଇ ହାତୀ ଉପରେ ବସି ରାଗରେ ଅଙ୍କୁଶ ମାରି ହାତୀ ଦଉଡ଼ାଇ ଦେଲା । ବ୍ରାହ୍ମଣ ଅଙ୍କୁଶଟି ଦେଇ ପୁତ୍ରକୁ ନ ପାଇ ଘରକୁ ଟଙ୍କାତକ ଧରି ଚାଲିଗଲା । ଏଣେ ବ୍ରାହ୍ମଣପିଲା ଅଙ୍କୁଶଟି ବାବାଜୀ ହାତରେ ଦେଖି ବିଚାର କଲା; ପିତା ଲୋଭରେ ପଡ଼ି ବଡ଼ ଅନ୍ୟାୟ କଲେ । ମୁଁ କିପରି ଏହାର ମୁଖରୁ ରକ୍ଷା ପାଇବି ? ଏପରି ବିଚାର କରୁ କରୁ ବାବାଜୀ ହାତୀକୁ ଦଉଡ଼ାଇ ନେଇ ପୋଖରୀ କୂଳ ବରଗଛ ମୂଳରେ ବାନ୍ଧିଦେଲା, ଆଉ ନିଜର ଲୁଗାପଟା ଅଙ୍କୁଶ ସବୁ ବାନ୍ଧି ବରଡାଳ ଉପରେ ଯତ୍ନରେ ରଖିଦେଇ ସ୍ନାନ କରିବାକୁ ଚାଲିଗଲା । ଏହା ଦେଖି ହାତୀ ଶୁଣ୍ଢ ମାରି ବରଡାଳ ଓହଲାଇ ଦେବାରୁ ଅଙ୍କୁଶଟି ଖସି ପଡ଼ିଲା । ହାତୀ ଅଙ୍କୁଶ ପାଇବାରୁ ମନ୍ତ୍ରବଳରେ ହାତୀ ରୂପ ଛାଡ଼ି ବେଙ୍ଗ ହୋଇଗଲା । ବାବାଜୀ ଏହା ଦେଖି ତତ୍‌କ୍ଷଣେ ସାପ ହୋଇ ଗୋଡ଼ାଇ ଯାନ୍ତେ ବ୍ରାହ୍ମଣ ପିଲା ବେଙ୍ଗରୂପ ଛାଡ଼ି ମାଛହୋଇ ପାଣିରେ ପଶିଗଲା । ବାବାଜୀ ଏହା ଦେଖି ବକହୋଇ ପାଣିକୂଳରେ ସେ ମାଛକୁ ଧରିବାପାଇଁ ଜଗି ବସିଲା । ଏ ସମୟରେ ଗୋଟିଏ ସ୍ତ୍ରୀଲୋକ ପାଣିନେବା ପାଇଁ ସେ ପୋଖରୀକି ଆସିଲା । ତାକୁ ଦେଖି ବ୍ରାହ୍ମଣପିଲା ମାଛ ରୂପ ଛାଡ଼ି ଗୋଟିଏ ସୋରିଷମାଳି ହୋଇ ତୁଠ ପଥର ଉପରେ ଦେଖାଗଲା; ସ୍ତ୍ରୀଲୋକ ସେ ମାଳଟିକି ଧରି ଘରକୁ ଚାଲିଗଲା । ବାବାଜୀ ଏହା ଜାଣିପାରି ବକରୂପ ଛାଡ଼ି ବାବାଜୀ ରୂପ ଧରି ତାର ପଛେ ପଛେ ଗୋଡ଼ାଇ ଗଲା । ସେ ସ୍ତ୍ରୀଟି ସାଧବର ବୋହୂ, ସେ ଘର ଭିତରେ ପଶି ଯିବାରୁ ବାବାଜୀ ଦୁଆରେ

ଥାଇ ମୋର ମାଲ ଦେଖିଗଲା ବୋଲି ଭାରି ଜୁଲମ ଲଗାଇଲା । ସାଧବ ବୋହୂ, ଏପରି ଚହଲ ଶୁଣି କ୍ରୋଧରେ ବେକରୁ ମାଳଟି ଛିଣ୍ଡାଇ ପଙ୍କର ବାଟେ ଫିଙ୍ଗିଦେଲା । ମାଳଟି ଛିଣ୍ଡିଯାଇ ଦାଣ୍ଡ ଦୁଆରେ ଗୋଟି ଗୋଟି ହୋଇ ପଡ଼ିଗଲା, ଏହା ଦେଖି ବାବାଜୀ ପାଗଳ ହୋଇ ସୋଳଷଯାକ ବାଛିବାକୁ ଲାଗିଲା, ଦୈବଯୋଗରେ ଜୀବଥିବା ସୋଳଷଟି ଅଲଗା ହୋଇ ପଡ଼ିଥିଲା, ତକ୍ଷଣେ ଗୋଟିଏ ବିରାଡ଼ି ହୋଇ ସେ ପାରାକୁ ମାରିଦେଲା । ପାରାଟି ମରିଯିବାରୁ ବ୍ରାହ୍ମଣ ପିଲା ତାକୁ ତ ଗୁରୁବୋଲି ଜାଣିଥିଲା, ସେ ହେତୁରୁ ବିରାଡ଼ି ହୋଇ ମୁଣ୍ଡିଆ ମାରୁଅଛି । ବାବାଜୀର ଏ ଦଶା ଦେଖି ବୀରପ୍ରତାପ ବେତାଳମାନଙ୍କୁ ବନ୍ଧନରୁ ଫିଟାଇ ବାବାଜୀ ମଠରୁ ସବୁ ଧନଦ୍ରବ୍ୟ ବାନ୍ଧି ନେଇ ନିଜ ରାଜ୍ୟରେ ରାଜା ହୋଇ ରହିଲା ।

ଏହିଠାରେ ଅବୋଲକରା କାହାଣୀର ତୃତୀୟ ତରଙ୍ଗ ଶେଷ ହେଲା ।



# କାଠଗରୁଡ଼ କାହାଣୀ

ସାମନ୍ତ ଆଉ ଅବୋଲକର ସେଠାରୁ ଯାଉଁ ଯାଉଁ ଚନ୍ଦାଙ୍ଗଦା ଦେଶରେ ପହଞ୍ଚିଲେ । ସେଠାରେ ରାଧାକୃଷ୍ଣ ମନ୍ଦିର ଅଛି । ତାର ନିକଟରେ ଗୋଟିଏ ତଡ଼ାଗ ଅଛି । ତରୁଲତା ପୁଷ୍ପଫଳରେ ଯାଗାଟି ଅତି ସୁଶୀତଳ ଏବଂ ମନୋହର ଦେଖି ସାମନ୍ତ କହିଲେ ଆଜି ଏହିଠାରେ ବିଶ୍ରାମ କରିବା । ଏହା କହି ସାମନ୍ତ ନିତ୍ୟକର୍ମ କରିବାକୁ ଗଲେ । ଅବୋଲକର ଠଙ୍କା ନେଇ ସଉଦା କିଣିବାକୁ ଗଲା । ଯାଇ ଦେଖିଲା ଯେ, ଗାଁ ମଝିରେ ପଥର ଖମ୍ବ ଉପରେ କାଠଗରୁଡ଼ ଗୋଟିଏ ଅଛି, ତାକୁ ସବୁ ଲୋକେ ପୂଜା କରୁଅଛନ୍ତି । ଆଶ୍ଚର୍ଯ୍ୟ ହୋଇ ପଚାରିଲା, ଏପରି ଗରୁଡ଼ ଏଠାରେ କିଏ ବସାଇଥିଲା ? କେହି କେହି କହି ପାରିଲେ ନାହିଁ, ବାରିକ ସନ୍ତୋଷ ନ ପାଇ ବିଷାଦ ମନରେ ଫେରିଆସିଲା । ଯାଇ ସାମନ୍ତଙ୍କୁ ପଚାରିଲା, ଏ ଦେଶରେ କାଠଗରୁଡ଼ କିଏ ବସାଇଛି ? ଏଥିର କାରଣ ବୁଝାଇଦିଅ । ନୋହିଲେ ଏହିଠାରେ ମୁଁ ମୋ ବାଟ ଧରୁଛି, ତୁମ୍ଭେ ତୁମ୍ଭ ବାଟ ଧର । ସାମନ୍ତ ବିଚାର କଲେ, ଏ ମୂର୍ଖକୁ ସଙ୍ଗରେ ଆଣି ବଡ଼ ସନ୍ତାପ ପାଇଲି । ଯାହାହେଉ ଅନ୍ୟ ଗତି ତ ନାହିଁ । ଯଥା ।—

ଲୁବ୍ଧମର୍ଥେନ ଗୃହ୍ଣୀୟାତ୍ ସ୍ତବ୍ଧମଞ୍ଜଳିକର୍ମଣା ।
ମୂର୍ଖଂ ଛନ୍ଦାନୁବାଦେନ ଯଥା ତଥ୍ୟେନ ପଣ୍ଡିତଂ ॥

ଲୋଭୀ ଲୋକକୁ ଧନ ଦେଇ, କ୍ରୋଧୀ ଲୋକକୁ ନମସ୍କାର କରି; ମୂର୍ଖକୁ ଛନ୍ଦ ବାକ୍ୟ, ପଣ୍ଡିତକୁ ଯଥାର୍ଥ କହି ବୁଝାଇବ । ଏ ମୂର୍ଖକୁ ପୁରାତନ ଇତିହାସ ନ କହିଲେ ଏ ନିଶ୍ଚୟ ସାଥି ଛାଡ଼ିଚାଲିଯିବ । ଏହା ଭାବି ଗଣ୍ଠିଲିରେ ଥିବା ସଉଦା ପତ୍ର ବାହାରି କରି ଖୋଆଇ ଆଚମନ କରି କହିଲେ, ପକା କମ୍ବଳ ପୋତ ଛତା—ବସ ଅବୋଲକର ଶୁଣ କଥା । ଏ ଦେଶରେ ବାନ୍ଧ୍ୟବାସିନୀ ନାମରେ ଦେବୀ ଅଛନ୍ତି । ତାଙ୍କର ଚୈତ୍ରମାସ ଶେଷ ମଙ୍ଗଳବାର ଦିନ ବଡ଼ ଯାତ୍ରା ହୁଏ । ସେ ଦିନ ଯାତ୍ରା ଦେଖିବାପାଇଁ ସେଠାକୁ ବହୁତ ଲୋକ ଆସିଥିଲେ । ଅଭ୍

ରଥକାର ( ବଢ଼େଇ ) କୌଳକ ( ଗୁଣିବିଦ୍ୟା ସାଧକ ) ଏ ଦୁଇ ମିତ୍ର ଯାତ୍ରା ଦେଖିବାକୁ ଅସିଥିଲେ । ଯାତ୍ରା ମହା ଆଡ଼ମ୍ବରରେ ହେଉଅଛି, ଏ ସମୟରେ ସେ ଦେଶ ରାଜାଙ୍କର ଜେମା ଅତି ମନୋହର ବେଶ ହୋଇ ଦେବାଙ୍କୁ ଦର୍ଶନ କରିବା ଅଭିଳାଷରେ ହାତୀ ଉପରେ ବସି ଯାତ୍ରା ମଧ୍ୟରେ ଅସି ପ୍ରବେଶ କଲେ । ତାଙ୍କୁ ଦେଖି କୌଳକ କାମପୀଡ଼ିତ ହୋଇ ମୂର୍ଚ୍ଛା ହୋଇଗଲା । ଏହା ଦେଖି ତାର ମିତ୍ର ରଥକାର ସିଞ୍ଚା ବିଞ୍ଚା କରି ଚେତା କରାଇଲା । ଥରେ ଚେତା କରାଇଲେ, ଆଉ ଥରେ ମୂର୍ଚ୍ଛା ହୋଇଯାଏ । ଏପରି ପାଞ୍ଚ ସାତ ଥର ମୂର୍ଚ୍ଛା ହେବାରୁ, ରଥକାର ତାକୁ ଶଗଡ଼ରେ ପକାଇ ଘରକୁ ନେଇଗଲା । ଘରେ ଅନେକ ଶୀତଳ ଉପଚାର କରି ଚେତା କରାଇ ରଥକାର ପଚାରିଲା—ମିତ୍ର ! ତୁମ୍ଭେ କାହିଁକି ଏପରି ମୂର୍ଚ୍ଛା ହେଉଅଛ ? ସେ କହିଲା, ମୋର ମୂର୍ଚ୍ଛା ହେବା କାରଣ କହିଲେ ଆଉ କଣ ହେବ ? ମୁଁ ଯାହା ପାଇଁ ମୂର୍ଚ୍ଛା ହେଉଅଛି ସେ ପଦାର୍ଥ ମତେ ମିଳିବ ନାହିଁ । ଏ ହେତୁରୁ ମୁଁ ସେଥିଲାଗି ଯାହା କଷ୍ଟ ଅନୁଭବ କରୁଅଛି ତା ଅପେକ୍ଷା ମରିଯିବା ବରଂ ଭଲ । ତୁମ୍ଭେ ଯଦି ମୋର ପ୍ରିୟମିତ୍ର ତା ହେଲେ ଗୋଟିଏ ଗାତ କରି ଅଗ୍ନି ଜାଳିଦିଅ, ମୁଁ ତହିଁରେ ଝାସ ଦେଇ ଜୀବନ ଛାଡ଼ି ଦେବି । ଏହା ଶୁଣି ରଥକାର କହିଲା—ମିତ୍ର ! ତୁମ୍ଭେ ମନକଥା ଗୁପ୍ତ ନ କରି ଥରେ ମାତ୍ର ମତେ କହ, ମୁଁ ସେ କାର୍ଯ୍ୟ ସିଦ୍ଧି ହେବାର ଉପାୟ କରିବି ।

> "ଉଦ୍ୟମେନ ହି ସିଦ୍ଧ୍ୟନ୍ତି କାର୍ଯ୍ୟାଣି ନ ମନୋରଥୈଃ,
> ନ ହି ସୁପ୍ତସ୍ୟ ସିଂହସ୍ୟ ପ୍ରବିଶନ୍ତି ମୁଖେ ମୃଗାଃ ।"

କାର୍ଯ୍ୟମାନ କେବଳ ଉଦ୍ୟମରେ ସିଦ୍ଧ ହୁଅନ୍ତି । ମନରେ ଭାବୁଥିଲେ ସିଦ୍ଧ ହୁଏ ନାହିଁ । ଦେଖ, ସିଂହ ଚେଷ୍ଟା ନ କରି ଘରେ ଶୋଇଥିଲେ ମୃଗମାନେ ତାର ମୁଖକୁ ଆପେ ଆସିବେ କି ? ଏ ହେତୁରୁ, ଉପାୟ କରିବା ଯଦି ନୋହିବ ପ୍ରଦୀପ୍ତ ଅଗ୍ନିରେ ଝାସ ଦେବା । ଏହା ଶୁଣି କୌଳକ କହିଲା, ତେବେ ତହିଁର କାରଣ କହୁଅଛି ଶୁଣ । ଯାତ୍ରା ମଧ୍ୟକୁ ହାତୀରେ ବସି ଯେଉଁ ରାଜକନ୍ୟା ଆସିଥିଲା, ଅଛି ତାର

ସଙ୍ଗେ ଯଦି ସହବାସ ନ କରିବ, ତେବେ ମୋ ଦେହରୁ ଅନାୟାସରେ ପ୍ରାଣ ଛଡ଼ିଯିବ । ଏହା ଶୁଣି ରଥକାର କହିଲା, ଏହି ସାମାନ୍ୟ କଥାକୁ ଏତେ ସନ୍ତାପ; ଉଠି ଭୋଜନ କରି ସୁସ୍ଥ ହୁଅ । ମୁଁ ତହିଁର ଉପାୟ ଘଟନା କରି ସନ୍ଧ୍ୟା ସମୟରେ ଆସିବି । ଏପରି କହି ରଥକାର ନିଜ ଘରକୁ ଯାଇ କାଠରେ ଗୋଟିଏ ଗରୁଡ଼ ନିର୍ମାଣ କଲା । ସେ ଯେପରି ଆକାଶରେ ଉଡ଼ିଯିବ ସେପରି ଯନ୍ତ୍ର ତା ଭିତରେ ଖଞ୍ଜିଦେଲା । ସନ୍ଧ୍ୟା ସମୟରେ କୌଳିକକୁ ଡାକିଆଣି ତା ଦେହରେ ଆଉ ଦୁଇଟି ହାତ କାଠରେ ତିଆରି କରି ଖଞ୍ଜି ଦେଲା । ଏ ବାଦ ଶଙ୍ଖ, ଚକ୍ର, ଗଦା ପଦ୍ମ ଏପରି ଚାରି ଅସ୍ତ୍ର ଧରାଇ ଦେଇ କହିଲା, ଏହି ଗରୁଡ଼ ଉପରେ ବସି ଆକାଶରେ ଉଡ଼ିଯାଅ । ରାଜକନ୍ୟା ତନିତାଲା ମେଡ଼ ଉପରେ ଶୋଇଥିବ, ତୁମେ ଆକାଶରେ ଉଡ଼ିଯାଇ ତା ପାଖରେ ହାଜର ହେବ । ସେଠାକୁ ନିଜ ବୁଦ୍ଧିବଳରେ ଅଉ ଯାହା କାର୍ଯ୍ୟ ପଡ଼ିବ ତାହା ଚଳାଇ ନେବ । ଏହା ଶୁଣି କୌଳିକ ଅର୍ଦ୍ଧରାତ୍ର ସମୟରେ ବେଶ ଭୂଷା ହୋଇ ସାକ୍ଷାତ ନାରାୟଣ ପରି ଗରୁଡ଼ ଉପରେ ବସି ଯନ୍ତ୍ରବଳରେ ଆକାଶରେ ଉଡ଼ିଯାଇ ରାଜାଙ୍କ ଅନ୍ତଃପୁର ମଧ୍ୟରୁ ଯେଉଁ ମେଡ଼ରେ କନ୍ୟା ଶୋଇଥିଲା, ସେଠାରେ ପ୍ରବେଶ ହେଲା । ପ୍ରବେଶ ହୋଇ କହିଲା, ରାଜପୁତ୍ରି ! ତୁମ୍ଭେ ଶୋଇଅଛ ନା ଚିହିଁଅଛ ? ତହୁଁ ରାଜକନ୍ୟା, ଆଶ୍ଚର୍ଯ୍ୟ ରୂପ ଦେଖି ଭୟ ପାଇ କହିଲା—ତୁମ୍ଭେ କିଏ ? କେଉଁବାଟେ ଏଠାକୁ ଆସିଲ ? ଏହା ଶୁଣି କପଟରୂପୀ କୌଳିକ କହିଲା, ଆମ୍ଭେ ଶ୍ରୀବିଷ୍ଣୁ । ରାଜକନ୍ୟା କହିଲା ଆପଣ କାହିଁକି ଏଠାକୁ ବିଜେ କଲ ? ସେ କହିଲା, ତୁମ୍ଭ ରୂପରେ ମୋହିତ ହୋଇ ଗରୁଡ଼ ଉପରେ ବସି ବାଟରେ ଆସିଲୁ । ଏହା ଶୁଣି ରାଜକନ୍ୟା କହିଲା, ଆପଣ ପରମ ପୁରୁଷ । ଯଦି ମୋଠାରେ ଅନୁଗ୍ରହ କଲେ ତା ହେଲେ ଗୋଟିଏ କଥା କରନ୍ତୁ । ବର୍ତ୍ତମାନ ମୁଁ ବିବାହ ହୋଇ ନ ଥିବାରୁ ପିତାଙ୍କ ଅଧୀନରେ ଅଛି । ଯଦି ଆପଣ ପିତାଙ୍କୁ କହିବେ, ସେ ମୋତେ ସନ୍ତୋଷରେ ଆପଣଙ୍କ ହସ୍ତରେ ପ୍ରଦାନ କରିବେ । ବିଷ୍ଣୁରୂପୀ କୌଳିକ କହିଲା, ତୁମ୍ଭ ପିତା ମନୁଷ୍ୟ, ଅମ୍ଭେ ନାରାୟଣ; ଯଦି ସାକ୍ଷାତରେ ଦେଖାଦେବୁ

ସେ ଭସ୍ମ ହୋଇଯିବ । ରାଜକନ୍ୟା କହିଲା, ଯେବେ ଏପରି ହୁଏ, ମୁଁ ତ ମାନୁଷୀ ସ୍ତ୍ରୀ, ମୋତେ ଭୋଗ କଲିବ—ମୁଁ କପରି ଭସ୍ମ ନ ହେବ ? କୌଳକ କହିଲା, ସେପରି ନୁହେ । ପୂର୍ବ ଜନ୍ମରେ ତୁମ୍ଭେ ରାଧିକା ହୋଇଥିଲ ଏବେ ରାଜକନ୍ୟା ହୋଇଅଛ । ଏ ହେତୁରୁ ପ୍ରତି ଜନ୍ମରେ ତୁମ୍ଭ ଆମ୍ଭର ପ୍ରୀତି ହୁଏ । ଏହା ଶୁଣି ରାଜକନ୍ୟା କିଛି ନ କହି ମଥା ପୋତି ରହିଲା ।

ଆହାରୋଦ୍ୱିଗୁଣଃ ସ୍ତ୍ରୀଣାଂ ବୁଦ୍ଧିସ୍ତାସାଂ ଚତୁର୍ଗୁଣଃ,
ଷଡ୍‌ଗୁଣୌ ବ୍ୟବସାୟଶ୍ଚ କାମାଷ୍ଟାଷ୍ଟଗୁଣଃ ସ୍ମୃତଃ ।

ନୀତିଶାସ୍ତ୍ର କହିଅଛି, ସ୍ତ୍ରୀମାନଙ୍କର ପୁରୁଷମାନଙ୍କ ଅପେକ୍ଷା ଆହାର ଦ୍ୱିଗୁଣ, ବୁଦ୍ଧି ଚତୁର୍ଗୁଣ, ବ୍ୟବସାୟ ଛ ଗୁଣ ଏବଂ କାମ ଆଠଗୁଣ । ଏ ହେତୁରୁ ରାଜି ହୋଇ ଦୁହିଙ୍କର କ୍ରୀଡ଼ା ବଢ଼ିଲା । ରାତି ପୁଇଥାଇ ଥାଉଁ ଥାଉଁ କୌଳକ କାଠଗରୁଡ଼ରେ ବସି ନିଜ ସ୍ଥାନକୁ ଚାଲିଗଲା ।—ପୁଣି ଆରଦିନ ସେହିପରି ଆସିଲା, ରାତି ଥାଉଁ ଥାଉଁ ବାହାରି ଗଲା । ଏପରି କେତେଦିନ ଯିବାରେ ରାଜକନ୍ୟାର ରକ୍ଷାକାରିଣୀ ସଖୀମାନେ ପୁରୁଷ ସମ୍ଭୋଗ ଚିହ୍ନମାନ ଦେଖି ପଚାରିଲେ—ତୁମ୍ଭେ କାହା ସଙ୍ଗେ ଗୁପ୍ତରେ ପ୍ରୀତି କରୁଅଛ ? ଏହା ଶୁଣି ରାଜକନ୍ୟା କ୍ରୋଧାନ୍ୱିତା ହୋଇ କହିଲା, ମୋତେ ଏପରି ମିଛରେ ଅପବାଦ ଦେଲେ ତୁମ୍ଭମାନଙ୍କୁ ଶୂଳ ଦେବ । ସଖୀମାନେ ଭୟରେ କିଛି ନ କହି ଏକାନ୍ତରେ ବିଚାର କଲେ, ଏ କନ୍ୟା କାହା ସଙ୍ଗେ ପାପପ୍ରୀତି କରୁଅଛି ? ନୋହିଲେ ନଖ ଦନ୍ତ ଚିହ୍ନମାନ ଏହା ଦେହରେ କାହିଁକି ହେଉଥାନ୍ତା ? ଚାଲ ସମସ୍ତେ ଏକମୁଖରେ ରାଜାଙ୍କୁ ଏହି କଥା ଜଣାଇବା, ନୋହିଲେ ପରିଶେଷରେ ପ୍ରାଣଦଣ୍ଡ ପାଇବା । ଏପରି ଭାବି ରାଜାଙ୍କ ନିକଟରେ ଗୁପ୍ତ କରି ସବୁ କହିଲେ । ରାଜା ଶୁଣି ଆଶ୍ଚର୍ଯ୍ୟ ଏବଂ କ୍ରୋଧାନ୍ୱିତ ହୋଇ ରାଣୀଙ୍କୁ ଏକାନ୍ତ ସ୍ଥାନକୁ ଡକାଇ କହିଲେ, ଦେଖ ! ଝିଅ କୁଳରେ କଳଙ୍କ ଲଗାଇଲା । ଚନ୍ଦ୍ର ସୂର୍ଯ୍ୟ କିରଣ ନ ପଶିବା ରାଜଭବନରେ ଥାଇ ଥାଇ ଜାର ପୁରୁଷରେ ପ୍ରୀତି କରୁଥିବାର ସଖୀମାନେ କହିଲେ । ଏଥିର ତତ୍ତ୍ୱ

ଶୀଘ୍ର ବୁଝ । ରାଣୀ ଏହା ଶୁଣି ତତକ୍ଷଣେ କେଶ ବସନ ଅସମ୍ଭାଳ ହୋଇ ଦଉଡ଼ିଲେ । ଯାଇ ଦେଖିଲେ, ଝିଅର ସ୍ତନ ଏବଂ ଓଷ୍ଠରେ ନଖ ଦନ୍ତ ଚିହ୍ନମାନ ରହିଅଛି । ଏହା ଦେଖି ଝିଅକୁ ବହୁତ ଧିକ୍କାର ବଚନ କହିଲେ । ଝିଅ ମନରେ କିଛି ଭୟ ନ କରି ମାତାଙ୍କୁ କହିଲା— ଏଥିରେ ମୋର କିଛି ଦୋଷ ନାହିଁ । ନିଜେ ଭଗବାନ ନାରାୟଣ ଗରୁଡ଼ ସ୍କନ୍ଧରେ ବସି ଆକାଶ ମାର୍ଗରେ ମୋର ପୁରକୁ ଆସି ମୋତେ ଭୋଗ କରୁଅଛନ୍ତି । ଯଦି ମିଛ ବୋଲିବ, ତା ହେଲେ ମିତା ମାତା ଦୁହେଁ ଆଜି ରାତିରେ ପାଞ୍ଚମହଲା କୋଠା ଉପରେ ବସିଥିବ, ତାହାଙ୍କୁ ନିଜେ ଦେଖିବ । ତହୁଁ ରାଣୀ ଯାଇ ଏହି ସବୁ କଥା ରାଜାଙ୍କୁ କହିଲେ । ତାପରେ ରାଜା ଓ ରାଣୀ ରାତିରେ କୋଠା ଉପରେ ବସି ଅଛନ୍ତି, ଏ ସମୟରେ କୌଳିକ ଆସିଗଲା । ଦେଖିଲେ ଯେ, ଚତୁର୍ଭୁଜରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧରି ଗରୁଡ଼ ଉପରେ ବସି ନାରାୟଣ ବିଜେକଲେ । ଦେଖି ଭାବିଲେ, ଆମ୍ଭର ଭାଗ୍ୟ ପ୍ରକାଶ ହେଲା । ସଂସାରରେ କନ୍ୟା ପ୍ରଦାନ କଲେ ଲୋକେ ବିଷ୍ଣୁ ପ୍ରୀତି ଅର୍ଥେ ଦିଅନ୍ତି । ସେହି ବିଷ୍ଣୁ ଯେବେ ନିଜେ ଅନୁଗ୍ରହ କରି ଝିଅକୁ ବିବାହ ହେଲେ, ଏଥିରୁ ଅଧିକ କଥା ଆଉ କଣ ଅଛି ? ଏପରି ଭାବି ଆରଦିନ ଯେଉଁଘରେ ଜେମା ରହିଥାଏ, ସେହି ଘରେ ଛଅ ସଞ୍ଜଙ୍କ ଅତର ପନିର ଜଳଖିଆ ଖାଦ୍ଡଣ ପ୍ରଭୃତି ଭୋଗ୍ୟ ପଦାର୍ଥ ବହୁତ ରଖାଇ-ଦେଲେ । ସେହିଦିନୁ ରାଜା ବିଷ୍ଣୁଙ୍କୁ ଜୁଆଁଇ କରି ପାଇ ନିଜେ ବଡ଼ଲୋକ ହେଲି ବିଚାରି ଅନ୍ୟାନ୍ୟ ରାଜାମାନଙ୍କଠାରେ ଲବେମାତ୍ର ଖାତିର ରଖିଲେ ନାହିଁ । ଆଉ ସବୁରି ଧନ, ରାଜ୍ୟ ସୀମା ଆକ୍ରମଣ କଲେ । ଏହା ଦେଖି ସବୁ ରାଜାମାନେ ଗୋଷ୍ଠୀଭୂତ ହୋଇ ବିଗ୍ରହ କରି ଭୀଷଣ ଯୁଦ୍ଧ ଆରମ୍ଭ କଲେ । ସେ ଯୁଦ୍ଧରେ ପାଦଦଣ୍ଡ ରାଜାମାନେ ଜୟ କରି ଦେଶଯାକ ଆକ୍ରମଣ କଲେ । ଏ ରାଜା ପରାଭବ ପାଇ ଝିଅକୁ କହିଲେ, ବିଷ୍ଣୁ ପରା ଜୁଆଁଇ ଥାଉ ଥାଉ ଆମ୍ଭେ ଶତ୍ରୁମାନଙ୍କଠାରୁ ପୀଡ଼ା ପାଉଅଛୁ । ଝିଅ ଏପରି ଶୁଣି ରାତିରେ କୌଳିକବିଷ୍ଣୁ ଆଗରେ ବିନମ୍ର ହୋଇ କହିଲା, ତୁମ୍ଭେ ଥାଉଁ ଥାଉଁ ମୋର ପିତା

ଶତ୍ରୁମାନଙ୍କଠାରୁ ପରାଜୟ ପାଉଅଛନ୍ତି । କୌଳିକ ଅଟ୍ଟହାସ କରି କହିଲା, ଏହି ଛାର କଥାକୁ ଏତେ ଭାବୁଛ କାହିଁକି ? ଆମ୍ଭେ ବାହାରି ଗଲେ ଶତ୍ରୁମାନେ କ୍ଷଣକେ ଭସ୍ମ ହୋଇଯିବେ । ଏପରି ଠକାମି ଭରି କଥା କହି କାଳହରଣ କରୁଥାଏ । ଏଣେ ଶତ୍ରୁମାନେ ରାଜ୍ୟଯାକ ସବୁ ନେଇ ଗଡ଼ ଚତୁଃପାର୍ଶ୍ୱରେ ଘେର କରି ଜଗିଲେ । ସେ ଦିନ ରାଜକନ୍ୟା ମୁଖ ପୋତିଦେଇ ରୋଦନ କରୁଅଛି, ଏ ସମୟେ କୌଳିକ ଆସି ପ୍ରବେଶ ହୋଇ ପଚାରିଲା କାହିଁକି କାନ୍ଦୁଅଛ ? ରାଜକନ୍ୟା କହିଲା କେତେ କହିଲି ଆପଣ ଶୁଣିଲେ ନାହିଁ । ଏବେ ଦେଖନ୍ତୁ ଶତ୍ରୁମାନେ ରାଜ୍ୟଯାକ ନେଇ ନଗର ଚତୁଃପାର୍ଶ୍ୱରେ ଘେର କରି ଜଗିଅଛନ୍ତି । କାଲି ସକାଳେ ଗଡ଼ ଭିତରେ ପଶି ଆମ୍ଭ ବଂଶଯାକ ମାରିବେ । ମୋର ପିତା ମାତା ଭାଇ ମଲେ ମୁଁ କି ପ୍ରାଣ ରଖିବି ? ଏଣୁ ମୋର ମରଣ କାଳ ଆସିଲା । ତୁମ୍ଭ ସୁଖେ ତୁମ୍ଭେ ଯାଅ । ଏପରି ଶୁଣି କୌଳିକ ବିଚାରି କଲା, ମୋର ମଧ୍ୟ ମୃତ୍ୟୁକାଳ ଆସିଲା—ମୁଁ ଯୁଦ୍ଧ ଜାଣେ ନାହିଁ । ଯୁଦ୍ଧ କଲେ ଅନାୟାସରେ ମରିବି, ନ ହେଲେ ଏ ସ୍ତ୍ରୀର ବିରହରେ ମରିବି । ଯାହା ହେଉ ମରେ ସରେ ସାହସ କରିବି । ଯଥା :—

ନ ସାହସମନାରୁହ୍ୟ ନରୋ ଭଦ୍ରାଣି ପଶ୍ୟତି
ସାହସଂ ପୁନରାରୁହ୍ୟ ଯଦି ଜୀବତି ପଶ୍ୟତି ॥

ମନୁଷ୍ୟ ସାହସ ନ କଲେ କେବେ ମାନ ମଙ୍ଗଳ କାର୍ଯ୍ୟ ପାଏ ନାହିଁ । ସାହସ କଲା ପରି ବଞ୍ଚିଥିଲେ ଅବଶ୍ୟ ମଙ୍ଗଳ ପାଏ । ଏପରି ବିଚାରି କହିଲା, ପ୍ରିୟେ ! ତୁମ୍ଭେ ଯାଇଁ ପିତାଙ୍କୁ କୁହ, ରାତି ପ୍ରହରେ ଥାଉ ଥାଉ ଯୁଦ୍ଧକୁ ବାହାରନ୍ତୁ । ଆମ୍ଭେ ଗରୁଡ଼ ଆରୋହଣ କରି ଆକାଶରେ ଥାଇ ଶତ୍ରୁ ସଂହାର କରିବୁ । ରାଜା ଝିଅଠାରୁ ଏହା ଶୁଣି ବିଷ୍ଣୁ ବଚନରେ ଏକାଗ୍ର ଭକ୍ତି ରଖି ଯୁଦ୍ଧକୁ ବାହାର ହେଲେ । ଏଣେ କୌଳିକ ଗରୁଡ଼ରେ ବସି ଆକାଶକୁ ଗଲା । ଏହି ସମୟରେ ସ୍ୱର୍ଗରେ ଭଗବାନ ଶ୍ରୀନାରାୟଣ ଗରୁଡ଼କୁ ପଚାରିଲେ, ପକ୍ଷୀରାଜ ! ମର୍ତ୍ତ୍ୟପୁରର ହାଲ କଣ ? ଗରୁଡ଼ କହିଲା, କୌଳିକ ନାମରେ ଏକ

ମହାମୂର୍ଖ କପଟରେ ବିଷ୍ଣୁ ରୂପ ଧରି କାଠରେ ଗରୁଡ଼ କରି ବିଷ୍ଣୁ ବୋଲି ନିଜକୁ କହି ରାଜକନ୍ୟାକୁ ହରୁଥିଲା । ଆଜି ସେ କନ୍ୟାର ପିତାକୁ ରକ୍ଷା କରିବାକୁ ଯୁଦ୍ଧକୁ ଯାଉଅଛି, ଏକ୍ଷଣି ମରିବ । ଏହା ଶୁଣି ନାରାୟଣ କହିଲେ, ତାହାହେଲେ ବଡ଼ ପ୍ରମାଦ ହେବ । ସେହି କପଟ ବିଷ୍ଣୁ ଏବଂ ଗରୁଡ଼ ଯଦି ଯୁଦ୍ଧରେ ମରିବେ ତେବେ ମର୍ତ୍ତ୍ୟପୁର ଲୋକେ ବିଷ୍ଣୁ ମଲେ ବୋଲି ଆମ୍ଭଙ୍କୁ ଆଉ ପୂଜା କରିବେ ନାହିଁ । ଏ ହେତୁରୁ ଶୀଘ୍ର ଚାଲ, ତୁମ୍ଭେ କାଠ ଗରୁଡ଼ରେ ପଶିବ ଆମ୍ଭେ କୌଳିକ ଦେହରେ ପଶିବୁଁ । ରାଜାର ଶତ୍ରୁମାନଙ୍କୁ ମାରି ଫେରି ଆସିବା । ଆହୁରି କଥାଏ କହିବା ଶୁଣ । ଆମ୍ଭେ ଗୀତାରେ କହୁଅଛୁଁ,

ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହଂ ।

ଯେ ଲୋକ ମତେ ଯେଉଁ ଭାବରେ ଭଜେ ମୁଁ ତାକୁ ସେହି ଭାବରେ ପ୍ରାପ୍ତ ହୁଏ । ରଜା କୌଳିକ ବୋଲି ଜାଣେ ନାହିଁ । ଏଣୁ କେବଳ ବିଷ୍ଣୁ ଭାବ ଏକାନ୍ତ ଭକ୍ତି ରଖିଅଛି ଓ ଆମ୍ଭେ ସେହି ଭାବରେ ଦେଖାଦେବା । ଏହା କହି ଦୁହିଙ୍କ ଦେହରେ ଦୁହେଁ ପ୍ରବେଶ ହେଲେ । ଗରୁଡ଼ ପ୍ରବେଶ ହେବାରୁ କାଠଗରୁଡ଼ର ବାହୁଫୋଟରେ ଶତ୍ରୁ ସୈନ୍ୟ ସବୁ ଉଡ଼ିଯାଇ ନଦୀ, ପର୍ବତ ଏବଂ ସମୁଦ୍ରରେ ପଡ଼ି ମଲେ । ରାଜା ସବୁ ରାଜ୍ୟଯାକ ଆକ୍ରମଣ କଲେ । ଗରୁଡ଼ ଓ ନାରାୟଣ ନିଜ ସ୍ଥାନକୁ ଗଲେ । ରାଜା କୌଳିକକୁ ବିଷ୍ଣୁ ମନ୍ଦିରେ ପୂଜା କରନ୍ତେ ସେ ହାତ ଯୋଡ଼ି କହିଲା, ମୁଁ ବିଷ୍ଣୁ ନୁହେ ଏହି ବେଶ କପଟରେ ଧରିଅଛି । ରାଜା ଏପରି ସାହସ କର୍ମ ଦେଖି କୌଳିକ ହସ୍ତରେ ଝିଅକୁ ପ୍ରଦାନ କରି ରାଜ୍ୟଭାର ମଧ୍ୟ ସମର୍ପଣ କଲେ । ସେହିଦିନୁ ସେ ଦେଶରେ କାଷ୍ଠ ଗରୁଡ଼ ପୂଜାପାଉଛି । ଏହିଠାରେ ଅବୋଲକର କାହାଣୀ ଚତୁର୍ଥ ତରଙ୍ଗ ଶେଷ ହେଲା ।



# ଛେଳ ଶୂଳ କଥା

ସେଠାରୁ ସାମନ୍ତ ଓ ଅବୋଲକରା ଯାଉ ଯାଉ ଅବନ୍ତୀ ନାମକ ଦେଶରେ ପହଞ୍ଚିଲେ । ବେଳ ଦୁଇପହର ହେଲାଣି, ସାମନ୍ତ ବଟଗଛ ମୂଳରେ ବସି ରହିଲେ । ସାମନ୍ତ କାର୍ଯ୍ୟକର୍ମ କରିବାକୁ ଗଲେ, ବାଟେ ସଉଦା କିଣିବାକୁ ଗଲା । ଯାଇ ଦେଖିଲା ଯେ, ରଜାଘର ସିଂହଦ୍ୱାରେ ଗୋଟିଏ ଛେଳକୁ ଶୂଳ ଦିଆହୋଇଅଛି । ତା ଦେହରୁ ଜୀବ ଛାଡୁନାହିଁ, ସବୁବେଳେ ମେଁ ମେଁ ହେଉଅଛି । ଏହା ଦେଖି ଅବୋଲକରା ଅଣ୍ଟର୍ଧ ହୋଇ ଫେରିଆସିଲା । ସାମନ୍ତ ଦେଖିଲେ ଯେ, ଅବୋଲକରା ସଉଦା ନ ଆଣି ଫେରି ଆସୁଅଛି । ମୁହଁ ଶୁଖି ଯାଇଅଛି । ବହୁତ କଲେ ପୂଣି କଣ ଦେଖିଲାଣି । ଏ ସମୟରେ ଅବୋଲକରା ଅସି କହିଲା; ଆଜି ବଡ଼ ଚମତ୍କାର ଦେଖିଲି । ରାଜଦ୍ୱାରେ ଛେଳ ଗୋଟିଏ ଶୂଳ ଦିଆହୋଇ-ଅଛି । ତା ଦେହରୁ ଜୀବ ଛାଡୁ ନାହିଁ । ଏପରି କାହିଁକି ହେଉଛି କହିଦିଅ, ନୋହିଲେ ମୋ ଶିକା ବାଉଙ୍ଗି ମୋର, ତୁମ ଲୁଗାପଟା ତୁମର । ଏହା ଶୁଣି ସାମନ୍ତ ବଟଗଛରେ ହେଲାଇ ନ କରି ଗଣ୍ଠିଲିରୁ ଛତୁଆ ବାହାର କରି ଜଳପାନ ସାରି କଥା ଆରମ୍ଭ କଲେ, ପକା କମ୍ବଳ ପୋତ ଛଡା—ବସ ଅବୋଲକରା ଶୁଣୁ କଥା । ଏହି ଦେଶରେ ରତ୍ନାଙ୍ଗଦ ନାମରେ ଜଣେ ରାଜା ଥିଲେ । ତାଙ୍କର ଅଧୁଷ୍ଟ ପରି ଛଅଗୋଟି ରାଣୀ ଥିଲେ । ପୁତ୍ର ସନ୍ତାନ ନ ହେବାରୁ ରାଜା ତୀର୍ଥ କରିବାକୁ ଗଲେ । ସଙ୍ଗରେ ଚାକର, ନୌକର, ବ୍ରାହ୍ମଣ, କରଣ, ଗଉଡ଼, ଭଣ୍ଡାରି ଏପରି ଅନେକ ଯାଇଥିଲେ । ରାଜା କାଶୀ, ପ୍ରୟାଗ, ମଥୁରା, ଅଯୋଧ୍ୟା, ବୃନ୍ଦାବନ ପ୍ରଭୃତି ଅନେକ ତୀର୍ଥ ବୁଲି ବୁଲି କାଉଁରି ଦେଶରେ ପ୍ରବେଶ ହେଲେ । ସେଠାରେ କାମାଖ୍ୟା ଠାକୁରାଣୀଙ୍କୁ ଦର୍ଶନ କଲେ । ସେଠାରେ ଜଣେ ବୃଦ୍ଧ ତାନ୍ତ୍ରିକ ଅବଧୂତ ଥିଲେ । ରାଜା ତାଙ୍କୁ ଗୁରୁ କରି ତାଙ୍କଠାରୁ ବହୁତ ଭୂତ, ପ୍ରେତ, ଡାକିନୀ, କଙ୍କାଳୀ, ବେତାଳୀ, ରାକ୍ଷସ, ବ୍ରହ୍ମରାକ୍ଷସ ସାଧନା ଶିକ୍ଷା କଲେ । ଏହାପରେ ପରକାୟ ପ୍ରବେଶ ମନ୍ତ୍ର ଶିକ୍ଷା କଲେ । ତା ପରେ ଗୁରୁଙ୍କଠାରୁ ମେଲାଣି ମାଗି ନିଜ ଦେଶକୁ

ଯିବାବେଳେ ଗୁରୁ କହିଲେ, ବାବା, ତୁମ୍ଭେ ପଛକୁ ଲେଉଟି ଚାହିଁବ ନାହିଁ । ଯେବେ ଚାହିଁବ ଏ ସବୁ ବିଦ୍ୟା ଲେଉଟି ଆସିବ । ରାଜା ସେପରି ଗୁରୁ ଆଜ୍ଞା ପାଳନ କରି ବାହାରିଲେ । ତିରିଶ କୋଶ ରାସ୍ତା ଯାଇ କାଉଁରୀ ଦେଶ ସୀମା ପାର ହୋଇ ବସା କଲେ । ସେଠାରେ ରୋଷାଇବାସ ଭୋଜନ ସାରି ରାଜା ମନରେ ବିଚାର କଲେ, ଗୁରୁଙ୍କ ଦେବା ବିଦ୍ୟାଯାକ ମନେ ଅଛି କି ନାହିଁ ଥରେ ପରୀକ୍ଷା କରିବି । ଦେଖିଲେ ବେଳକୁ ସବୁ ବିଦ୍ୟା ମନରେ ଅଛି । କେବଳ ପରକାୟା ପ୍ରବେଶ ବିଦ୍ୟାଟି ପାଶୋରି ଯାଇଛି । ତହୁଁ ବିଚାର କଲେ, ଗୁରୁ କହିଅଛନ୍ତି ପଛକୁ ଚାହିଁଲେ ବିଦ୍ୟା ଫେରିଯିବ । ଏବେ କଣ କରିବି ? ଏପରି ଭାବି ପବନା ନାମକ ଭଣ୍ଡାରିକୁ ଡାକିଲେ । ଚିଠି ଗୋଟିଏ ଲେଖି ତା ହାତରେ ଗୁରୁଙ୍କ ପାଖକୁ ପଠାଇ ଦେଲେ । ସେଠାରୁ ପବନା ପବନ ପରି ଗତି କରି ଯାଇ କାମାକ୍ଷା ଦେବୀଙ୍କ ମନ୍ଦିରରେ ଅବଧୂତଙ୍କୁ ଚିଠି ଖଣ୍ଡିକ ଦେଲା । ଅବଧୂତ ପାଠ କରି ପୁନର୍ବି ପରକାୟା ମନ୍ତ୍ର ଲେଖି ଚିଠି ଭିତରେ ମୁଦି କରି ପବନା ହାତରେ ଦେଲେ । ପବନା ଯାଉଁ ଯାଉଁ ବାଟରେ ବିଚାର କଲା; ଏଥିରେ କଣ ଲେଖା ହୋଇଛି ଦେଖିବି । ତା ପରି ଚିଠି ଫିଟାଇ ଦେଖିଲା ଯେ ପରକାୟା ମନ୍ତ୍ର ଲେଖା ହୋଇଅଛି । ତତ୍କ୍ଷଣେ ଘୋଷି ଦେଲା । ତା ପରେ ଚିଠି ମୁଦି କରି ନେଇ ରାଜାଙ୍କୁ ଦେଲା । ରାଜା ମନ୍ତ୍ରଟି ପାଇ ବଡ଼ ସନ୍ତୋଷ ହେଲେ । ସେଠାରୁ ସମସ୍ତେ ପଥ ବାହି ଚାଲିଗଲେ । ଯାଉଁ ଯାଉଁ ବାଟରେ ଘୋର ଅରଣ୍ୟ ପଡ଼ିଲା । ଗ୍ରାମ ପାଟଣା କିଛି ନାହିଁ । ସିଂହ, ବାଘ, ଭାଲୁ, ଗଣ୍ଡା, ଗୟଳ, ସାପ ବହୁତ ସେ ବନରେ ପୂରି ଅଛନ୍ତି । ଦୈବରେ ଜ୍ୟେଷ୍ଠମାସ, ଖରାର ବଡ଼ ପ୍ରତାପ; ପାଣି ମିଳୁ ନାହିଁ । ରାଜାଙ୍କୁ ବଡ଼ଶୋଷ ଲାଗିଲା, ସେଠାରେ ରହି ପାଣି ଖୋଜାଇଲେ । ଚାକରମାନେ ଖୋଜି ଖୋଜି ପାଣି ପାଇଲେ ନାହିଁ । ଆଉ ଦେଖିଲେ ପଥର କୋରଡ଼ ଭିତରେ ବାର ହାତ ଦୂରରେ ପାଣି ଅଛି, କିନ୍ତୁ ଯିବାକୁ ରାସ୍ତା ନାହିଁ । ଏହା ଦେଖି ଯାଇ ରାଜାଙ୍କୁ କହିଲେ । ରାଜା ନିଜେ ଯାଇ ଦେଖିଲେ ଯେ ପାଣି ଥିବା ରାସ୍ତାଟି ବଡ଼ ଛୋଟ, ମନୁଷ୍ୟ ଯାଇ ପାରିବ ନାହିଁ । ତା ପରେ

ଦେଖିଲେ ଅଠର ହାତ ଲମ୍ବ ଅହିରାଜ ସାପ ଗୋଟିଏ ମରି ସେଠାରେ ପଡ଼ିଛି । ବିଚାର କଲେ, ପରକାୟ ମନ୍ତ୍ରରେ ସାପ ଦେହରେ ପଶି ଜଳ ମିଳିବ । ଏହା ମନରେ ଭାବି ଚାକରମାନଙ୍କୁ କହିଲେ, ତୃଷାରେ ହୃଦୟ ଆକୁଳ ହେଉଛି । ଏଠାରେ ଆମ୍ଭେ ଦୁଇଘଡ଼ି ବିଶ୍ରାମ କରିବୁଁ । ଯେ ମୋର ନିଦ୍ରା ଭାଙ୍ଗିଦେବ ତାହାର ଶିର ଛେଦନ କରିବି । ଏପରି କପଟରେ ଶୋଇ ମନ୍ତ୍ର ବଳରେ ସାପ ଦେହରେ ପ୍ରବେଶ ହେଲେ । ମଲା ସାପ ସେହିକ୍ଷଣି ଉଠି ପଥର କୋଡ଼ରେ ପଶି ପାଣି ପିଇଲା । ମଲା ସାପ ଜୀଇବାର ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଭଣ୍ଡାରି ତ ସେ କଥା ଜାଣେ; ତତ୍‌କ୍ଷଣେ ନିଜ ଦେହ ଛାଡ଼ି ରାଜା ଦେହରେ ପଶିଗଲା । ତହୁଁ ରାଜା ଦେହରେ ଭଣ୍ଡାରି ରହି ହୁକୁମ ଦେଲା, ଚାଲ ସମସ୍ତେ ଶୀଘ୍ର ପଳାଇ ଯିବା । ସେଠାରୁ ରାଜା ସହିତ ସର୍ବେ ପଳାଇଗଲେ । ଭଣ୍ଡାରି ସେଠାରେ ନିର୍ଜୀବ ହୋଇ ପଡ଼ିଅଛି । ଏ ସମୟରେ ରାଜା ସାପ ଦେହରେ ଥାଇ ଦେଖିଲେ ଯେ, ଭଣ୍ଡାରି ତାଙ୍କ ଦେହରେ ପଶି ରାଜା ହୋଇ ବାହାରିଗଲା । ଭଣ୍ଡାରି ଦେହଟା ପଡ଼ିଅଛି । ବିଚାର କଲେ :—

ସଦ୍ଭାବ ପ୍ରତିପନ୍ନା'ନାଂ ବଞ୍ଚନେ କା ବିଦଗ୍ଧତା
ଅଙ୍କମାରୁହ୍ୟ ସୁପ୍ତସ୍ୟ ହନ୍ତୁଃ କିଂ ନାମ ପୌରୁଷଂ ॥

ଯେପରି କୋଳ ଉପରେ ମୁଣ୍ଡ ଦେଇ ଶୋଇଥିବା ଲୋକକୁ ହାଣି ଦେଲେ ପୌରୁଷ ହୁଏ ନାହିଁ, ସେପରି ବିଶ୍ୱାସୀ ଲୋକକୁ ଠକିଲେ ଚତୁରତା ହୁଏ ନାହିଁ । ଏ ପାପିଷ୍ଠ ଅବିଶ୍ୱାସୀ ଏପରି କଲା । ଅଭ ରାଜା ହୋଇ ଭଣ୍ଡାରି କପରି ହେବ ? ଏହା ଭାବି ସେହି ସାପ ଦେହରେ ଥାଇ ବନସ୍ତରେ ବୁଲିଲେ । ତେଣେ ରାଣୀମାନେ ରାଜା ଆସିବା ଶୁଣି ବନ୍ଦାପନା କରିବାପାଇଁ ଅର୍ଘ୍ୟଥାଳମାନ ସଜ କରି ରହିଅଛନ୍ତି । ଏ ତ ଭଣ୍ଡାରି ଟୋକା, ରାଜନୀତି କଣ ଜାଣିବ ? ଅନ୍ତଃପୁରକୁ ନ ଯାଇ ଆସି ସିଂହାସନରେ ବସିଲା । ଏପରି ଅନୀତ ରାଣୀମାନେ ଦେଖି ଏଥିରେ କଣ ହେଲେ ଦୁର୍ଘଟଣା ହୋଇଥିବ ଭାବି ଭିତରୁ ହୁକୁମ ପଠାଇଲେ,

ରାଜାଙ୍କୁ କହିବ—ତୁମ୍ଭେ ତୀର୍ଥବାସ କରି ଯିବାରୁ ଆମ୍ଭେ ରାଣୀମାନେ ବ୍ରତ ଆଚରଣ କରିଅଛୁଁ, ବ୍ରତ ଶେଷ ନ ହେବାଯାଏ ତୁମ୍ଭେ ଭିତରକୁ ଆସିବ ନାହିଁ । ଏ ତ ସହଜେ ଭଣ୍ଡାରି, ଭରସା କରି ଆଉ ଭିତରେ ପଶି ପାରିଲା ନାହିଁ । ଏଣେ ମାଛ, ମାଂସ, ଘିଅ, ଦୁଧ, ଖଜା, ଗଜା, ଛେନା, ପଣା, ଅଦା, ଲୁଣ, ଖାଇ ପିଇ, ଦାସ୍ୟ ଦାସୀ ରଖି ଆନନ୍ଦରେ ରହିଥାଏ । ଦେଶ ଘୋଷ ବୁଝିବା ସବୁ ସେହିପରି । ତେଣେ ରଜା ସାପ ଦେହରେ ଥାଇ ବିଚାର କଲେ, ପୂର୍ବ ପାପରୁ ଏବେ ସାପ ହେଲି, ସାପ ହେବାରୁ ପାପ କରିବ, ପାପ କଲେ ନର୍କକୁ ଯିବ । ଋଷିମାନେ କହିଛନ୍ତି :—

ଯାତ୍ୟଧୋଽଧୋ ବ୍ରଜତ୍ୟୁଚ୍ଚୈର୍ନରଃ ସ୍ୱୈରେବ କର୍ମଭିଃ ।
କୂପସ୍ୟ ଖନତା ଯଦ୍‌ବତ୍ ପ୍ରାକାରସ୍ୟେବ କାରକଃ ॥

ନିଜ କର୍ମ ବଳରେ ଲୋକ ସାନ ଏବଂ ବଡ଼ ହେଉଅଛି । ଯେପରି କୂଅ ଖୋଳିବା ଲୋକ କ୍ରମେ କ୍ରମେ ତଳକୁ ଯାଉଅଛି, ପାଚେରି ଗଢ଼ିବା ଲୋକ କ୍ରମେ କ୍ରମେ ଉପରକୁ ଯାଉଅଛି । ଏପରି ଭାବୁଭାବୁ ଦେଖିଲେ, ଶୁଆଟିଏ ମରି ପଡ଼ିଥିଲା । ସାପ ଦେହରୁ ଯାଇ ଶୁଆ ଦେହରେ ପଶିଗଲେ । ଶୁଆ ହେବାରୁ ଉଡ଼ି ଯାଇ ନିଜ ଦେଶ (ଅବନ୍ତୀ ଦେଶ) ଅରଣ୍ୟରେ ରହିଲେ । ଏହି ଶୁଆକୁ ସବୁ ଶୁଆମାନେ ଶୁଆ ଗୋଷ୍ଠିରେ ରଜା କଲେ । ଶୁଆମାନଙ୍କର ବସା ଅତି ଉଚ୍ଚ ପଥର ଉପରେ ଥାଏ । ସେଠାକୁ ମନୁଷ୍ୟ ଆଦି ଜନ୍ତୁମାନେ ଯିବାକୁ ବାଟ ନ ଥାଏ । ଏ ସମୟରେ ଗୋଟିଏ କୁଅ ଆସି ଶୁଆମାନଙ୍କୁ କହିଲା, ମୁଁ ତୁମ୍ଭ ସାଙ୍ଗରେ ସାଥି ହୋଇ ରହିବ । ଏହା ଶୁଣି ରଜା ଶୁଆ କହିଲା, ଏହାକୁ ରଖିବା ନାହିଁ । ଏ ବଡ଼ ଦୁଷ୍ଟ ଯଥା—

ଦୁର୍ଜନଃ ସଙ୍ଗମେଳାସ୍ୟାଂ ଅକାଳେ ମୃତ୍ୟୁ ଲକ୍ଷଣଂ ।

ଦୁର୍ଜନ ସଙ୍ଗେ ସଙ୍ଗୀ ହେଲେ ଅକାଳରେ ମୃତ୍ୟୁ ଘଟେ । ଏହା ଶୁଣି ଆଉ ଶୁଆମାନେ କହିଲେ, ଏତ ଶରଣ ପଶିଲା ପରି ଆସିଅଛି, କିଛିକାଳ ରହୁ । କୁଅ ସେଠାରେ ରହିବାରୁ ବରଫଳ ଖାଇ ପଥର

କୋରଡ଼ରେ ମଳ ତ୍ୟାଗ କଲା । ତହିଁରୁ ବରଗଛ ଉଠି ଡାଳକୁ ବୋଲି ଶିଅ ଗୁଳି ଅସିଲା । ଦିନେ ଏକ ଶବର ଶିକାର କରିବାକୁ ଯାଇଥିଲା । ଜୀବ ଜନ୍ତୁ ନ ପାଇ ବୁଲି ବୁଲି ସେହିଠାରେ ପହଞ୍ଚିଲା । ବର ଶିଅରେ ଚଢ଼ି ଉପରକୁ ଯାଇ ଦେଖିଲା ଯେ ଶୁଆଯାକ ଚରି ବୁଲି ଯାଇ ଅଛନ୍ତି । ବସାରେ ଡିମ୍ବ ଛୁଆଯାକ ଥିଲେ, ସେ ଛୁଆଯାକ ସବୁ ବାନ୍ଧିଲା । ତା ପରି ବସା ପାଖରେ କାଣ୍ଡିଅ ଖଞ୍ଜିଦେଇ ଚାଲିଗଲା । ଶୁଆଯାକ ସଞ୍ଜବେଳକୁ ଚରି ବୁଲି ଅସି ବସାରେ ପଶିଚଲା ବେଳକୁ କାଣ୍ଡିଅ ଅଠାରେ ବାନ୍ଧି ହୋଇଗଲେ । ଗଣାତିରେ ନଅଣ ଖାଠିଏ ଶୁଆ ଥିଲେ । ସମୁଦାୟ ବନ୍ଧନରେ ପଡ଼ି ବିଚାର କଲେ, ଅମ୍ଭେମାନେ ରଜାଙ୍କ କଥା ନ ମାନି ବୁଅକୁ ଏଠାରେ ସ୍ଥାନ ଦେବାରୁ ଡିମ୍ବ ଛୁଆ ସବୁ ମଲେ । ଅମ୍ଭେମାନେ ସାରି ପାହିଲେ ମରିବା । ବଡ଼ ଲୋକମାନଙ୍କର କଥା ଯେ ନ ଶୁଣେ ସେ ଏହିପରି ଆପଦ ପାଏ । ଏହା ଶୁଣି ରଜା ଶୁଆ କହିଲା, ଏତେବେଳେ ଭୟକୁ ଭାଳିବାର ସମୟ ନୁହେଁ । ଯଥା:—

ତାବଦ୍ଭୟେନ ଭେତବ୍ୟଂ ଯାବଦ୍ଭୟମନାଗତଂ ।
ଆଗତଂ ତୁ ଭୟଂ ଦୃଷ୍ଟ୍ୱା ପ୍ରହର୍ତ୍ତବ୍ୟମଶଙ୍କିତଃ ॥

ଯେତେବେଳ ପର୍ଯ୍ୟନ୍ତ ଭୟ ନିକଟକୁ ଅସି ନ ଥାଏ, ସେତେବେଳ ଯାଏ ଭୀତ ହେଉଥିବ । ନିକଟରେ ଭୟ ଅଗତ ହେବାର ଦେଖିଲେ ଶଙ୍କା ଛାଡ଼ି କାର୍ଯ୍ୟ କରିବ । ଏବେ ଅମ୍ଭେମାନେ ଏ ବିପଦରୁ ଯେପରି ରକ୍ଷା ପାଇବା ସେ କଥା ବିଚାର କର । ଏହା ଶୁଣି ଶୁଆମାନେ କହିଲେ, ଏଣିକି ତୁମ୍ଭେ ଯାହା କହିବ ତାହା କରିବୁ । ରଜା ଶୁଆ କହିଲା, ତେବେ ସମସ୍ତେ ତୁମ ଫୁଲାଇ ଆଖି ଲେଉଟାଇ ମଲା ପରି ପଡ଼ି ଥାଅ । ଶବର ଦେଖିଲାବେଳକୁ ଅମ୍ଭେ ମଲାପରି ପଡ଼ିଥିଲେ ସେ ଗୋଟି ଗୋଟି କରି କାଣ୍ଡିଅ ବାହାର କରି ତଳକୁ ଫିଙ୍ଗିଦେବ । ଅନ୍ୟ ଯାହାକୁ ଫିଙ୍ଗିଥିବ ସେ ଗଣୁଥିବ । ୯୬୦ ହୋଇଗଲେ କେଁ କରି ଡାକ ଦେଲେ ସମସ୍ତେ ଏକାବେଳକେ ଉଠି ପଳାଇବା । ଏପରି ବିଚାର କରି ଶୁଆମାନେ ସାରାଯାକ ମଲାପରି ପଡ଼ି ଅଛନ୍ତି । ଏଣେ ଶବର ସାରି

ବୁଲି ଘଡ଼ି ଥାଉଁ ଥାଉଁ ତାର ଭାର୍ଯ୍ୟାକୁ କହିଲା, ଆଜ ଯେ ଶୁଆ ଆଣିବ ସାଇପଡ଼ଶା ଦେ ଦେଉଣୀ ପ୍ରିୟାପ୍ରୀତ ଝିଅଝିଆଣିଅ ବନ୍ଧୁ ବାନ୍ଧବ ଏମାନଙ୍କୁ ଦେଇ ଆପେ ଖାଇଲା ବାଦେ ଅଧିର ବୋଝେ ବଳବ । ଏହା କହି ଆନନ୍ଦରେ ତରତର ହୋଇ ଗଲା । ଯାଇ ଦେଖିଲା ବେଳକୁ; କାଣ୍ଡିଆରେ ପଡ଼ି ଶୁଆଯାକ ମରି ଯାଇ ଅଛନ୍ତି । ବିଗୁର କଲା, କାଣ୍ଡିଆ ଛଡ଼ାଇ ତଳକୁ ଫିଙ୍ଗି ଦେଇ ପଛେ ଓଟ୍ଟାଇଲେ ସବୁ ଖୋଜି ନେବ । ଏହା ଭାବ କାଣ୍ଡିଆଟି ଛଡ଼ାଇ ନଳରେ ରଖି ଶୁଆଟି ତଳକୁ ପକାଇ ଦିଏ । ଏବେ ଫିଙ୍ଗ୍ ଫିଙ୍ଗ୍ ନଅଶ ଅଣଷାଠି ହୋଇଅଛି, ଏ ସମୟରେ ଭାରି ହୋଇ ଯିବାରୁ କାଣ୍ଡିଆ ନଳଟି ଖସି ପଡ଼ିଲା । ଗଣୁଥିବା ଶୁଆ ୯୬୦ ହୋଇଯିବାରୁ ଦୈଁ କରି ଡାକ ଅନ୍ତେ ସବୁଯାକ ଉଡ଼ି ପଳାଇଲେ, କେବଳ ରଜା ଶୁଆଟି ଶବରର ହାତରେ ଅଛି । ଏହା ଦେଖି ଶବର ବ୍ୟାକୁଳ ମନରେ ବିଗୁର କଲା, ମୋର ମନ୍ଦ କର୍ମକୁ ପକ୍ଷୀ ଜାବ ହୋଇ ମନୁଷ୍ୟ ପରି ଆଚରଣ କଲେ । ଏବେ ଏ ଶୁଆଟିଙ୍କୁ ନେଇ ଜାଳିଥିବ ନିଆଁରେ ପକାଇ ପୋଡ଼ି ଖାଇବ । ତହୁଁ ଶୁଆଟି ଧରି ବିରସ ମନରେ ମନ୍ଦ ମନ୍ଦ ହୋଇ ଫେରିଗଲା । ଘରକୁ ଯିବାରୁ ତାର ଭାର୍ଯ୍ୟା ପଗୃରିଲା, ଶୁଆଯାକ କାହାକୁ ଦେଲ କି ? ଶବର କହିଲା, ସେ କଥା କିଛି କହ ନା । ମୁଁ ଗାଧୋଇ ଆସିଲେ, ଏ ଶୁଆଟିକୁ ପୋଡ଼ି ଖାଇବ । ଏପରି କହି ଶବର ଗାଧୋଇ ଯିବାରୁ ଶବରୁଣୀକି ଶୁଆ କହିଲା, ମତେ ମାରି ଖାଇ ଦେଲେ କଣ ପାଇବ ? ପେଟ ତ ପୂରିବ ନାହିଁ । ବଜାରକୁ ନେଇ ଯେବେ ବିକି କରିବ, ତିନ ହଜାର ଟଙ୍କା ପାଇବ । ଏହା ଶୁଣି ଶବରୁଣୀ ବିଗୃର କଲା ଏ କାହାର ପୋଷା ଶୁଆଟିଏ । ନୋହିଲେ ଏପରି କଥା କହନ୍ତା କି ? ଏହା ଭାବ ଦୁଧଭାତ ଖୁଆଇ ଲୁଗୃଇ ରଖିଦେଲା । ଏଣେ ଶବର ଗାଧୋଇ ଆସି ଶୁଆ ଖୋଜିବାରୁ ଶବରୁଣୀ କହିଲା, ସେଇଟା ପୋଷା ଶୁଆ, ତାକୁ ବଜାରରେ ବିକି କରିବା । ତହୁଁ ଶବର ଜୀଅପିଅ ସାରି ସନ୍ତୋଷ ହୋଇ ଶୁଆକୁ ଧରି ବିକି କରିବାକୁ ବାହାରିଲା । ଯାଉଁ ଯାଉଁ ବାଟରେ ଶୁଆ କହିଲା, ମୋତେ ନେଇ ଅବନ୍ତୀ ନଗରକୁ ଗୃଲ । ସେଠାରେ କେହି ଗ୍ରାହକ

ଶୁଆର ଭାଉ ପଚାରିଲେ କହିବୁ ଶୁଆର ମୂଲ୍ୟ ଶୁଆ କହିବ । ଏହା ଶୁଣି ଶବର କ୍ରମେ ଯାଇ ଅବନ୍ତୀ ନଗରରେ ପହଞ୍ଚିଲା । ସେଠାରେ ବଡ଼ ବଡ଼ ମହାଜନମାନେ ଆଉ ଭଦ୍ରଲୋକମାନେ ଶୁଆର ମୂଲ୍ୟ ପଚାରୁଥିଲେ । ଶବର କହିଲା ଶୁଆର ମୂଲ୍ୟ ଶୁଆ କହିବ । ଶୁଆକୁ ପଚାରିବାରୁ ସେ କହିଲା, ମୋର ମୂଲ୍ୟ ତିନି ହଜାର ଟଙ୍କା । ଏହା ଶୁଣି ସମସ୍ତେ ଉପହାସ କଲେ । ଏକ ବଡ଼ ମହାଜନ ପଚାରିଲା, ତିନିହଜାର ଟଙ୍କାଦେଇ ତୋତେ ନେଲେ ତୁ କି ଉପକାର କରିବୁ ? ଶୁଆ କହିଲା, ତୁମ୍ଭେ ମହାଜନ ( ବେପାରୀ ) ତୁମ୍ଭଙ୍କୁ ଲାଭ ଲୋଡ଼ା । ତିନିହଜାର ଟଙ୍କାଦେଇ ନେଲେ ଛମାସ ପରେ ଆଉ ତିନିହଜାର ଟଙ୍କା ଲାଭ ପାଇବ—ଏହା ଶୁଣି ମହାଜନ ତିନି ହଜାର ଟଙ୍କା ଦେଇ ଶୁଆଟି ରଖିଲେ । ଶବର ଟଙ୍କା ପାଇ ଖୁସିରେ ଘରକୁ ଚାଲିଗଲା । ଏପରି ସମୟରେ ସେହି ଅବନ୍ତୀ ଦେଶର ଚାରିଜଣ ବ୍ରାହ୍ମଣ, ସେ ଚାରିହେଁ ଚାରି ମିତ୍ର । ଗୋଟିଏ ଦେଶକୁ ଯାଗ କରିବାକୁ ଯାଇଥିଲେ । ଯାଗ କରି ସେ ରାଜାଙ୍କଠାରୁ ଅନେକ ଧନ ପାଇଲେ । ଆଉ ଦୁଇ ଖଣ୍ଡ ସୁନାର ଇଟା ଗୋଟିଏ ପୁରସ୍କାର ପାଇଲେ । ସେଠାରୁ ପୁଣି ଗ୍ରାମକୁ ଫେରି ଆସିଲାବେଳେ ନଦୀ ଶ୍ମଶାନ, ତୋଟା ଏପରି ଅପନ୍ତରରେ ବସି ରହନ୍ତି । ରାତି ହେଲେ ଜଣକେ ପହରେ ହିସାବରେ ଚାରିଜଣ ଯାକ ଚାରିପହର ଜଗୁଥାନ୍ତି । ଯାଉଁ ଯାଉଁ ଗ୍ରାମ ଆଉ ଦିନକର ବାଟ ଅଛି । ସେଦିନ ରାତିରେ ଗୋଟିଏ ନଦୀତଟେ ତୋଟାରେ ବସି ରହିଲେ । ରାତି ତୃତୀୟ ପହରରେ ଯାହାର ପହରି ପାଳି ପଡ଼ିଲା, ସେହି ବ୍ରାହ୍ମଣ ଇଟାସୁନାଟି ନେଇ ଏକ ଯାଗାରେ ପୋତି-ଦେଇ ସେଠାରୁ ଆସି ଏମାନଙ୍କ ସଙ୍ଗରେ ମିଛରେ ଶୋଇ ପଡ଼ିଲା । ଏହା ପର ଚତୁର୍ଥ ପହରିବାଲା ଉଠିଲାବେଳକୁ ତୃତୀୟ ପହରିବାଲା ନିଦରେ ଶୋଇଅଛି । ତାହା ଦେଖି ସମସ୍ତଙ୍କୁ ଉଠାଇ ଦେଖିଲାବେଳକୁ ଇଟା ସୁନାଟି ନାହିଁ । ତୃତୀୟ ପହରିବାଲାକୁ କହିଲେ, ତୁ କେବଳ ନେଇଅଛୁ । ସେ କହିଲା, ମୋର ଦେହ ବେରାମ ଥିଲା, ସେ ଯୋଗୁଁ ଆଖି ପଡ଼ିଗଲା । ସେ ଭିତରେ ତୁମ୍ଭେମାନେ କିଏ ନେଇଅଛ । ଚାଖିଲ ଦିଅ ନୋହିଲେ ତାର ପ୍ରତିଫଳ ପାଇବ । ଏପରି ପରସ୍ପର ବୋଲାବୋଲି

ହେଉ ହେଉ ଛଡାରୁ ବେଣ୍ଟ କାହାର କର ପିଠାପିଟି ହେଲେ । ସେଥିରେ ମଧ୍ୟ କେହି କେବାର ନିଷ୍ପତ୍ତି କରି ପାରିଲେ ନାହିଁ । ତହୁଁ ନ୍ୟାୟ କରିବାକୁ ରାଜଦ୍ୱାରକୁ ଗଲେ । ରାଜାଙ୍କୁ ସେ ସବୁ ହାଲ କହି ପୁଣି କହିଲେ, ଏପରି ନ୍ୟାୟ ହେବ ଯେ ଆମ୍ଭର ମିତ ମାଣିକ୍ୟ ଦୁଇ କଥା ରହିବ । ରାଜା କହିଲେ, ମିତ ମାଣିକ୍ୟ କଣ ? ବ୍ରାହ୍ମଣମାନେ କହିଲେ, ଅମ୍ଭେମାନେ ଗୃହମିତ, କାହାଠାରେ କାହାର ମନ ଖରାପ ହେବ ନାହିଁ, ଇଠା ସୁନାଟି ପାଇବୁଁ । ଅବନ୍ତୀ ଦେଶରେ ତ ଭଣ୍ଡାର ରଜା ହୋଇଥିଲା । ଏପରି ନ୍ୟାୟ ଶୁଣି କିଛି ନାପ କଣ କରିବ । ଚୁପ୍ ହୋଇ ବକ ପରି ରହିଲା । ଏହା ଦେଖି ବ୍ରାହ୍ମଣମାନେ ସେଠାରୁ ଫେରିଯାଇ ଦାଣ୍ଡଯାକ ରଜାକୁ ନିନ୍ଦା କରି ଯାଉଛନ୍ତି । ଏ ସମୟରେ ମହାଜନ ଦ୍ୱାରେ ରଜାଶୁଆ ଥାଇ ସେ ନିନ୍ଦା ଶୁଣି ବ୍ରାହ୍ମଣମାନଙ୍କୁ ଡାକି କହିଲା—ତୁମ୍ଭେମାନେ କାହିଁକି ରଜାଙ୍କୁ ନିନ୍ଦା କରୁଅଛ ? ବ୍ରାହ୍ମଣମାନେ କହିଲେ, ସେଇଠା ରଜା ନୁହେ, ସେ ଗୋଟିଏ ଗଧ । ଅମ୍ଭେ ନ୍ୟାୟ ପଚାରିବାରୁ ବକ ପରି ରହିଅଛି । ଏହା ଶୁଣି ଶୁଆ ଅଳ୍ପ ହସି କହିଲା, ମୁଁ ସେ ନ୍ୟାୟ ବୁଝିଦେବ । ତାପରେ ମହାଜନକୁ କହି ଭଦ୍ରଲୋକଙ୍କୁ ଡକାଇ ସଭା କରାଇଲା । ସଭା ଜମିବାରୁ ଶୁଆ କହିଲା, ସମସ୍ତ ସଭ୍ୟମାନେ ଶୁଣ । ଏ ବ୍ରାହ୍ମଣ ଗୋସାଇଁମାନଙ୍କର ଇଠା ସୁନାଟିଏ ହଜି ଯାଇଅଛି । ଅମ୍ଭେ ଏପରି ନ୍ୟାୟ କରିବା ଯେ ମିତ ମାଣିକ୍ୟ ଦୁଇକଥା ରହିବ । ଏଥି ସକାଶେ ମୁଁ ଗୋଟିଏ ପୂର୍ବ ଇତିହାସ କହିବ, ସମସ୍ତେ ଏକମୁଖରେ ଶୁଣ :—ପୂର୍ବକାଳରେ ଏକ ଦେଶରେ ମଦନମେଖଳା ନାମରେ ଗୋଟିଏ ବାଳିକା ସ୍କୁଲରେ ପାଠ ପଢ଼ୁଥିଲା । ପଢ଼ା ସାରି ଯିବା ସମୟରେ ଗୁରୁଙ୍କୁ କହିଲା, ଆପଣଙ୍କର ଯାହା ଇଚ୍ଛା ହେଉଅଛି ମାଗନ୍ତୁ—ମୁଁ ଦେବ । ଗୁରୁ କହିଲେ ତୁ ଯାଅ ଅମ୍ଭର କିଛି ଲୋଡ଼ା ନାହିଁ । ଏହା ଶୁଣି ମଦନମେଖଳା ପୁନଃ ପୁନଃ ସେହି କଥା କହିବାରୁ ଗୁରୁ କ୍ରୁଦ୍ଧହୋଇ କହିଲେ, ଅମ୍ଭେ ନାହିଁ କଲେ ଯଦି ବାରମ୍ବାର ବଳାଉଅଛୁ ତେବେ ସତ୍ୟ କର, ଅମ୍ଭେ ଯାହା ମାଗିବୁ ତାହା ଦେବୁ । ମଦନମେଖଳା ସୂର୍ଯ୍ୟଙ୍କୁ ଚାହିଁ ସତ୍ୟ କରିବାରୁ ଗୁରୁ କହିଲେ, ଯେଉଁଦିନ

ତୁ ପୁହାଣି ହୋଇ ଯିବୁ, ସେଦିନ ରାତିରେ ଆଗେ ଆମ୍ଭଙ୍କୁ ଦେହ ସମର୍ପଣ କରି ପଛେ ତୋର ଗୃହସ୍ଥକୁ ଛୁଇଁବୁ । ଏହା ଶୁଣି ମଦନମେଖଳା ସେପରି କରିବ କହି ଆନନ୍ଦରେ ଘରକୁ ଚାଲିଗଲା । କେତେଦିନ ପରେ ମଦନମେଖଳା ପୁହାଣି ହୋଇଗଲା । ସେଦିନ ଭୋଜଭାତ, ହୋମ, ଦାନ, ଝିଅ ପିଅ ସାରି ରାତି ପ୍ରହରକପାଖରେ ମଧୁଶଯ୍ୟା ଘରେ ନିଜ ପତି ପାଖରେ ପ୍ରବେଶ ହୋଇ ପ୍ରଣାମ କରି କହିଲା, ଯଥା—

ଗୁରୁରଗ୍ନି ଦ୍ୱିଜାତୀନାଂ ବର୍ଣ୍ଣାନାଂ ବ୍ରାହ୍ମଣୋ ଗୁରୁଃ ।
ପତିରେକୋ ଗୁରୁ ସ୍ତ୍ରୀଣାଂ ସର୍ବସ୍ୟାଭ୍ୟାଗତୋ ଗୁରୁଃ ॥

ଅଗ୍ନି ବ୍ରାହ୍ମଣମାନଙ୍କ ଗୁରୁ, ବ୍ରାହ୍ମଣ ସବୁ ବର୍ଣ୍ଣମାନଙ୍କର ଗୁରୁ, ପତି ସ୍ତ୍ରୀମାନଙ୍କର ଗୁରୁ, ଅଭ୍ୟାଗତ ଏ ସମସ୍ତଙ୍କର ଗୁରୁ । ଏ ହେତୁରୁ ତୁମ୍ଭେ ମୋର ଗୁରୁ, ଦେବତା ଏବଂ ସର୍ବସ୍ୱ । ଏବେ ମୁଁ ତୁମ୍ଭର ଅଧୀନ । ତୁମ୍ଭ ଅନୁମତି ନ ଥିଲେ ମୋ ଇଚ୍ଛାରେ ମୁଁ କିଛି କରି ପାରିବ ନାହିଁ । ସେଥିପାଇଁ ଜଣାଉଅଛି, ତୁମ୍ଭେ ଆଜ୍ଞା ଦେଲେ ମୁଁ ଗୋଟିଏ ସତ୍ୟ କରିଅଛି; ତାହା ପାଳନ କରି ଆସିବି । ଏହା ଶୁଣି ତାର ପତି କହିଲେ, କଣ ସତ୍ୟ କରିଅଛୁ ? ସେ ଗୁରୁଙ୍କ ଆଗରେ ଯେପରି ସତ୍ୟ କରିଥିଲା ସବୁ କହିଲା । ସେ କଥା ଶୁଣି ତାର ପତି ବିଚାର କଲେ, ଏ କିଛି ଛନ୍ଦ କପଟ କହୁ ନାହିଁ, ନିଶ୍ଚୟ ଗୁରୁଙ୍କ ଆଗରେ ସତ୍ୟ କରିଅଛି । ଯଦି ଅସତ୍ୟ ହେବ, ତାହା ହେଲେ ବଂଶ ଲୋପ ହେବ । ଧର୍ମଶାସ୍ତ୍ରରେ ଯାହା କହି ଅଛନ୍ତି—

ସତ୍ୟେନ ଶପଥଂ କୁର୍ଯ୍ୟାତ୍ ଦେବାଗ୍ନି ଗୁରୁସନ୍ନିଧୌ ।
ତାବଚ୍ଛ୍ୱଲତି ମେ ଗାତ୍ରଂ ଯାବଦ୍‌ବଂଶୋ ନ ଲୁପ୍ୟତେ ।

ଦେବତା, ଅଗ୍ନି ଏବଂ ଗୁରୁଙ୍କ ସନ୍ନିଧିରେ ସତ୍ୟ କରି ପାଳନ ନ କଲେ ବଂଶ ଲୋପ ହେବାଯାଏ ଈଶ୍ୱରଙ୍କ ଦେହ ଜଳୁଥାଏ । ଏ ହେତୁରୁ ସତ୍ୟ ପାଳିବାକୁ ଯାଉ, ଦେଖିବା ସତ୍ୟର କେତେ ଦୂର ବଳ

ଅଛ ? ଏହିପରି ଭାବ କହିଲେ, ଶୀଘ୍ର ଯାଅ, ଗୁରୁଙ୍କଠାରେ ସତ୍ୟ ପାଳନ କରି ଚଞ୍ଚଳ ଆସ । ମଦନମେଖଳା ପତି ଆଜ୍ଞା ପାଇ ସେହି ସଜରେ ଗୁରୁଙ୍କ ନିକଟକୁ ବାହାରିଲା । ସେଠାରୁ ଗୁରୁଙ୍କ ଘର ଦେଢ଼ କୋଶ ଦୂର । ବାଟଯାକ ଜଙ୍ଗଲ । ସ୍ୱଭାବରେ ରାତିକାଳ, ପୁଣି ଅନ୍ଧାର ଘୋଟିଅଛି । ଯାଉଁ ଯାଉଁ ବାଟରେ ଭୟଙ୍କର ବ୍ୟାଘ୍ର ମୁଖରେ ପଡ଼ିଲା । ବ୍ୟାଘ୍ର ତାହାକୁ ଖାଇବାକୁ ଉଦ୍ୟତ ହେବାରୁ ସେ ହାତଯୋଡ଼ି ବ୍ୟାଘ୍ରକୁ କହିଲା, "ମୃଗରାଜ ! ତୁମ୍ଭେ ମତେ ଏହିକ୍ଷଣି ଖାଅ ନାହିଁ, ମୁଁ ସତ୍ୟ ପାଳିବାପାଇଁ ଗୁରୁଙ୍କ ଠାକୁ ଯାଉଅଛି; ସେଠାରୁ ଏହିବାଟେ ଆସିବି, ମୋତେ ଖାଇବ ।" ବ୍ୟାଘ୍ର ଏହା ଶୁଣି ସତ୍ୟ ବୁଝିବାପାଇଁ ତାକୁ ଛାଡ଼ିଦେଲା । ପୁଣି ଯାଉଁ ଯାଉଁ ଏକ ଚୋରର ଆଗରେ ଭେଟ ପଡ଼ିଲା । ଚୋର ସବୁ ଅଳଙ୍କାର ଦେହରୁ ନେଇ ଯିବାକୁ ଉଦ୍ୟମ କରିବାରୁ ତାକୁ କହିଲା, ମୁଁ ସତ୍ୟ ପାଳିବାକୁ ଯାଉଅଛି, ତୁମ୍ଭେ ଏହିଠାରେ ଥାଅ, ମୁଁ ଏହିକ୍ଷଣି ଫେରି ଆସିବି । ଆସିଲେ ମୋ ଅଳଙ୍କାର ଯାକ ନେବ । ଏହା ଶୁଣି ଚୋର ମଧ୍ୟ ଛାଡ଼ିଦେଲା । ସେଠାରୁ ଯାଉଁ ଯାଉଁ ଏକ ଜାର ପୁରୁଷ ଏହାର ରୂପ ଲାବଣ୍ୟ ଦେଖି ଅତ୍ୟାଚାର କରିବାକୁ ଉଦ୍ୟମ କରନ୍ତେ ତାକୁ ମଧ୍ୟ କହିଲା, ମୁଁ ସତ୍ୟପାଳି ଯାଉଅଛି, ବାହୁଡ଼ି ଆସିଲେ ତୁମ୍ଭେ ମୋତେ ସମ୍ଭୋଗ କରିବ । ସେ ମଧ୍ୟ ଛାଡ଼ିଦେଲା । ତହୁଁ ମଦନମେଖଳା ଗୁରୁଙ୍କ ଦୁଆରକୁ ଯାଇ ଡାକିଲା; ସେ ସମୟକୁ ଗୁରୁ ନିଦ୍ରାସକ୍ତରେ ଶୋଇଥିଲେ । ଚାରି ପାଞ୍ଚ ଡାକ ପରେ ନିଦ ଭାଙ୍ଗି ଉଠିଲେ । ତାଙ୍କର ଅବା ଏ କଥା କାହିଁକି ମନରେ ଥିବ ? କେହି ଜଣେ ଡାକୁଅଛି ଭାବି ଦୁଆର ଫିଟାଇଲେ । ମଦନମେଖଳା ଗୁରୁଙ୍କୁ ଦଣ୍ଡ ପ୍ରଣାମ କରି ହାତ ଯୋଡି ଠିଆ ହୋଇଅଛି । ଗୁରୁ ତାକୁ ନ ଚିହ୍ନି କହିଲେ, ତୁମ୍ଭେ କିଏ, କାହାର ସ୍ତ୍ରୀ, କାହିଁକି ଅର୍ଦ୍ଧରାତ୍ରରେ ଏଠାକୁ ଆସି ଅଛ ? ସେ କହିଲା, ମୁଁ ଆପଣଙ୍କ ଶିଷ୍ୟା, ମୋର ନାମ ମଦନମେଖଳା । ମୁଁ ଆପଣଙ୍କଠାରେ ସତ୍ୟ କରିଥିଲି, ପୁଅଣିଘର ଦିନ ରାତ୍ରରେ ଆସିବାକୁ । ଏବେ ସେହି ସତ୍ୟ ପାଳିବାପାଇଁ ଆସିଅଛି । ଆପଣ ମୋଠାରେ ଦୟା କରନ୍ତୁ । ଏହା ଶୁଣି ଗୁରୁ ସାଧ୍

ସାଧୁ କହି ଧନ୍ୟବାଦ ଦେଲେ । ଆଉ କହିଲେ, ମୁଁ ସମଗ୍ର ଦକ୍ଷିଣା ପାଇଗଲି । ପରମ ସନ୍ତୋଷ ହୋଇ ଆଶୀର୍ବାଦ କରୁଅଛି, ଏହିକ୍ଷଣି ଏଠାରୁ ନିରାପଦରେ ଗୃହକୁ ଚାଲିଯାଅ । ଏହା ଶୁଣି ମଦନମେଖଳା ଗୁରୁଙ୍କୁ ଦଣ୍ଡପ୍ରଣାମ କରି ବାହାରିଲା । ଯାଇ ବାଟରେ ଜାର ପୁରୁଷକୁ କହିଲା, ମୁଁ ସତ୍ୟ ପାଳି ଆସିଲି, ତୋର ଇଚ୍ଛା ଥିଲେ ମୋତେ ସମ୍ଭୋଗ କର । ଏପରି ଶୁଣି ସେ କହିଲା, ତୋ ପରି ସତ୍ୟବତୀ କେହି ନ ଥିବ । ତତେ ଛୁଇଁବାକୁ ମୁଁ ଭାଜନ ନୁହେଁ । ତୋ ସୁଖେ ତୁ ଚାଲିଯାଅ । ସେଠାରୁ ଯାଇ ଚୋରକୁ କହିଲା, ମୁଁ ସତ୍ୟ ପାଳି ଆସିଲି, ତୋର ଇଚ୍ଛା ଥିଲେ ଅଳଙ୍କାର ସବୁ ନେଇଯାଅ । ଚୋର ଭାବି ଭାବି କହିଲା, ମୋର ନାମ ଶୁଣିଲେ ଲୋକେ ଚାରିକୋଶ ବାଟରୁ ବାହୁଡ଼ି ଯାନ୍ତି । ତୁ ନିର୍ଲୋଭରେ ଅଳଙ୍କାର ଦେଉଅଛୁ । ତୋର ଏ ସତ୍ୟ ଦେଖି ଛାଡ଼ି ଦେଲି, ଆନନ୍ଦରେ ଚାଲିଯାଅ । ସେଠାରୁ ଯାଇ ବ୍ୟାଘ୍ରକୁ କହିଲା, ମୁଁ ସତ୍ୟ ରଖି ଆସିଅଛି, ମୋତେ ଖାଇ ଆତ୍ମା ତୁଷ୍ଟ କର । ବ୍ୟାଘ୍ର କହିଲା, ତୋର ସତ୍ୟ ଦେଖି ମୁଁ ବଡ଼ ଆନନ୍ଦ ହେଲି । ତୋତେ ଖାଇବି ନାହିଁ । ତୁ ସୁଖରେ ଘରକୁ ଯାଅ । ସେଠାରୁ ମଦନମେଖଳା ଯାଇ ନିଜ ପତି ଆଗରେ ସମସ୍ତ ବୃତ୍ତାନ୍ତ କହି ପତି ସହିତ ଆନନ୍ଦରେ କାଳଯାପନ କଲା । ଧାର୍ମିକ ଲୋକଙ୍କୁ ଧର୍ମ ରକ୍ଷା କରେ । ଏଥି ଉତ୍ତାରେ ଶୁଆ କହିଲା, ତୁମ୍ଭେ ଚାରି ମିତଯାକ କହିଲ ବ୍ୟାଘ୍ର, ଚୋର, ଜାର ଏବଂ ଗୁରୁ ଏ ଚାରିଙ୍କ ଭିତରୁ କାହାର ବେଶି ଧର୍ମ ହେଲା ? ଏହା ଶୁଣି କିଏ କଣ କହିଲା । ଯେ ସୁନା ଚୋରି କରିଥିଲା ସେ କହିଲା, ଚୋରର ବେଶି ଧର୍ମ ହେଲା । ତାପରେ ଶୁଆ କହିଲା, ବେଳ ଉଚ୍ଛୁର ହେଲାଣି, ଆଜ ସଭା ଏତିକିରେ ଥାଉ । କାଲି ମିତଯାକ ଚାରି ପହରରେ ଜଣେ ଜଣେ ଆସି ମୋ ସଙ୍ଗେ ଦେଖା କରିବି । ସନ୍ଧ୍ୟା-ହେଲେ ସମସ୍ତେ ମିଶି ଆସିବ । ସଭା କରି ତୁମ୍ଭ ନ୍ୟାୟ ନିଷ୍ପତ୍ତି କରିବା । ଏହାପରେ ଯେ ଯାହାର ଘରମାନଙ୍କୁ ଚାଲିଗଲେ । ଆରଦିନ ବ୍ରାହ୍ମଣମାନେ ପ୍ରହରକେ ଜଣେ ଜଣେ ଆସି ଶୁଆକୁ ଦେଖାକଲେ । ଯେ ସୁନାଇଟା ନେଇ ପୋତିଥିଲା ତାକୁ ଶୁଆ କହିଲା, ତୁମ୍ଭେ ରଖିଅଛ ।

କେହି ନ ଜାଣୁ ମୋ ପାଖରେ ଉଠାଟି ଆଣି ଥୋଇଦିଅ, ନୋହିଲେ ଧରା ପଡ଼ିବ । ଏହା ଶୁଣି ସେ ବ୍ରାହ୍ମଣ ଭୟରେ ମୁନାଟି ଆଣି ଶୁଆ ପାଖରେ ଥୋଇ ଗଲେଗଲା । ସାୟଂକାଳ ହେବାରୁ ସଭ୍ୟମାନେ ଏବଂ ବ୍ରାହ୍ମଣମାନେ ଆସିଲେ । ଶୁଆ କହିଲା, ଗୋସାଇଁମାନେ ! ହେଉଛି ତୁମ୍ଭର ମୁନାଉଠା । ନିଅ । ମିତ ମାଣିକ୍ୟ ଦୁଇକଥା ପାଇଲ, ଆନନ୍ଦରେ ଦେଶକୁ ଯାଅ । ବ୍ରାହ୍ମଣମାନେ ଏବଂ ସଭ୍ୟମାନେ ଶୁଆକୁ ବହୁତ ପ୍ରଶଂସା କରି ଯେ ଯାହାର ଗୃହକୁ ଗଲେ । ଶୁଆର ଏପରି ନ୍ୟାୟ କରିବାର ଶୁଣି ରାଣୀମାନେ ଛଅହଜାର ଟଙ୍କା ଦେଇ ଶୁଆଟିକି ନେଇ ଅନ୍ତଃପୁର ଭିତରେ ସୁବର୍ଣ୍ଣ ପଞ୍ଜୁରୀରେ ରଖିଲେ । ଏହାପରେ ଗୋଟିଏ ଅଦ୍ଭୁତ କଥା ଘଟିଲା । ସେ ଦେଶରେ ହରି ମିଶ୍ର ନାମରେ ଜଣେ ବ୍ରାହ୍ମଣ ଥିଲେ । ତାଙ୍କ ପୁତ୍ରର ନାମ ଲୋକନାଥ । ସେ ନିତାନ୍ତ ଗରିବ ହୋଇଥିବାରୁ ଲୋକନାଥ ମଗା ଯାଚ୍ଚ୍ କରିବାକୁ ଦୂର ବିଦେଶକୁ ଯାଇଅଛନ୍ତି । ଏଥିମଧ୍ୟରେ ଏକ ବ୍ରହ୍ମରାକ୍ଷସ ସାକ୍ଷାତ୍ ଲୋକନାଥ ପରି ରୂପ ହୋଇ ଆସିଲା । ବାପ ମା ଦେଖି ପୁଅ ଆସିଲା ବୋଲି ବଡ଼ ଆନନ୍ଦ ହେଲେ । ତା'ପରେ ଭୋଜନ କରିବା ପାଇଁ ମାଆ ଆସି ପୁଅକୁ ଡାକି ନେଲେ । ବ୍ରହ୍ମରାକ୍ଷସ ଖାଉଥାଏ, ମା ପରଷୁଥାଏ, ଖାଉ ଖାଉ ଯେତେକ ରନ୍ଧା ହୋଇଥିଲା ସବୁଯାକ ଖାଇଲା, ତଥାପି ତାର ପେଟ ପୂରିଲା ନାହିଁ । ତୋରାଣି ପାଣି ଦୁଇ ତିନି କଂସା ପିଇକରି ଉଠିଲା—ଏହା ଦେଖି ମା ବିଚାର କଲେ ପୁଅ ମୋର ବିଦେଶରେ ବୁଲି ବୁଲି ରଙ୍କାଣିଆ ହୋଇଅଛି ଉପରବେଳାକୁ ବହୁତ ରାନ୍ଧିଥିବି । ଏହା ଭାବି ସେପରି ରାନ୍ଧିଲେ । ଉପରବେଳା ଯାହା ରନ୍ଧା ହୋଇଥିଲା, ସବୁ ଖାଇ ତେବେ ହେଲେ ସେ ସନ୍ତୁଷ୍ଟ ହେଲା ନାହିଁ । ଏପରି ଖାଉ ଖାଉ ଘରେ ଯାହା ଥିଲା ଗୁରି ଦିନରେ ସବୁ ଖାଇଦେଲା । ମା କହିଲେ, କି ରେ ପୁଅ, ତୁ ବିଦେଶ ଗଲୁ ଯେ ପାହୁଲେ ସୁଦ୍ଧା ଆଣିଲୁ ନାହିଁ; ଆଉ ଦରିଦ୍ର ହୋଇ ଆସିଅଛୁ ଯେ ସାତହାଣ୍ଡି ଖାଉଛୁ । ଘରେ ତ କାଠ ପତ୍ର ଡାଲି ଚାଉଳ ତେଲ ଲୁଣ କିଛି ନାହିଁ; କିପରି ଚଳିବ ? ଏହା ଶୁଣି ରାକ୍ଷସ କହିଲା, କିଛି ଚିନ୍ତା ନାହିଁ, ମୁଁ କାଲି ସବୁ ଆଣି ଦେବି । ସେ ତ ସହଜେ

ବ୍ରହ୍ମରାକ୍ଷସ, ଅଧରାତିରେ ଉଠିଗଲା । ଜଙ୍ଗଲ ଭିତରୁ ବଡ଼ ବଡ଼ ଗଛମାନ ଉପାଡ଼ିଆଣି ବାଡ଼ିଯାକ ଭର୍ତ୍ତି କରିଦେଲା । ତା ପରେ ବଡ଼ ବଡ଼ ମହାଜନମାନଙ୍କ ଗୋଦାମରୁ ଡାଲି ଚାଉଳ, ଲୁଗା ପଟା, କଂସା ତମ୍ବା, ସୁନା ରୁପା ଯାବତ ପଦାର୍ଥ ବୋହିଆଣି ଘରଯାକ ପୂର୍ଣ୍ଣ କରିଦେଲା । ତାର ଏପରି ପ୍ରତାପ ଦେଖି ଗ୍ରାମ ଓ ଦେଶ ଲୋକେ ଭୟରେ କରଯୋଡ଼ି ରହିଥାନ୍ତି । ବାପ ମା ଏହା ଦେଖି ବଡ଼ ଖୁସି ହେଲେ । ବେଶୀ ଖାଇଲେ ପୁଅର ବେଶୀ ବଳ ହେବ ଭାବି ନିତି ଦଶ ପନ୍ଦର ହାଣ୍ଡି ରାନ୍ଧି ଦେଉ ଥାନ୍ତି । ଏଥିର କେତେ ଦିନ ଯିବାରେ ତାଙ୍କର ନିଜ ପୁଅ ଲୋକନାଥ ଆସିଲା । ସେ ବାପୁଡ଼ା ମଗା ଯଗୃ କରି ଦଶ ପାଞ୍ଚ ଟଙ୍କା ଧରି ଆସିଥିଲା—ଦେଖିଲା ଯେ ଘରଯାକ କୋଠା ହୋଇଅଛି । ସେ ଭୟରେ ଭିତରକୁ ନ ଯାଇ ପିଣ୍ଡାରେ ବସିଥାଏ । ଏ ସମୟରେ ତାର ବାପ ହରିମିଶ୍ରେ ଘରୁ ବାହାରିଲେ । ତାଙ୍କୁ ଦେଖି ପୁଅ ନମସ୍କାର କଲା । ହରିମିଶ୍ରେ ପଚାରିଲେ ତୁ କିଏ ? ସେ କହିଲା, ମୁଁ ପରା ତୁମ୍ଭର ପୁଅ —ଲୋକନାଥ । ହରିମିଶ୍ରେ ଏହା ଶୁଣି ଠିକ ଠିକ ହସି କହିଲେ, ମୋର ଲୋକା ତ ଚାରିମାସ ହେଲା ଆସି ଧନ ଦ୍ରବ୍ୟରେ ଘର ଦ୍ୱାର ପୂର୍ଣ୍ଣ କରି ଦେଲାଣି । ତୁ ପୁଣି କିଏ ଲୋକନାଥ ବୋଲି କହୁଅଛୁ ? ଏ ସମୟରେ ତାର ମା ଆସିଲା, ସେ ମଧ୍ୟ ବାପ କହିଲା ଭଳି କହିଲା । ଅଭି ଏ ବାପୁଡ଼ା କଣ କରିବ ? ଆକୁଳରେ ଗ୍ରାମବାସୀମାନଙ୍କୁ କହିଲା । ସେମାନେ ଏଥିର ତତ୍ତ୍ୱ କିଛି ବୁଝି ନ ପାରି ତୁନି ହୋଇ ରହିଲେ । ତହୁଁ ଲୋକନାଥ ନିରାଶ ହୋଇ ରଜା ଛାମୁରେ ଫେରାଦ କରିବାକୁ ଗଲା—ଯାଉଁ ଯାଉଁ ବାଟରେ ଗୋଟିଏ ଲୋକକୁ ଦେଖି ଏ ସବୁ ହାଲ କହିବାରୁ ସେ କହିଲା—ରଜା କିଛି ନ୍ୟାୟ ବୁଝନ୍ତି ନାହିଁ । ଗୋଟିଏ ଶୁଆ ମହାଜନ ରଖିଥିଲା, ତାକୁ ରାଣୀମାନେ ନେଇ ଅଛନ୍ତି । ସେହି ଶୁଆ ପାଖରେ ନ୍ୟାୟ ହେଲେ ସାରସାର ମିଳିବ । ଏହା ଶୁଣି ଲୋକନାଥ ଯାଇ ଦ୍ୱାରପାଳ ହାତରେ ଦରଖାସ୍ତ ଦେଇ ରାଣୀମାନଙ୍କୁ ଜଣାଇଲା । ରାଣୀମାନେ ଆଶ୍ଚର୍ଯ୍ୟ ନ୍ୟାୟ ଶୁଣିବାପାଇଁ ନବର ଭିତରେ ନ୍ୟାୟ କରାଇଲେ । ଶୁଆ କହିବା ପ୍ରକାରେ ହରିମିଶ୍ରକୁ, ତାର ଭାର୍ଯ୍ୟାକୁ,

ୟକ୍ଷସ ଲୋକନାଥକୁ ଓ ଗ୍ରାମବାସୀମାନଙ୍କୁ ଡକାଇ ଆଣିଲେ । ସମସ୍ତେ ଆସିଲା ପରେ ନ୍ୟାୟ ଆରମ୍ଭ ହେଲା । ଶୁଆ କହିଲା—ତୁମ ଦୁଇ ଜଣରୁ ହରିମିଶ୍ରଙ୍କର ପୁଅ କିଏ ? ରାକ୍ଷସ କହିଲା, ମୁଁ ଏହାଙ୍କର ପୁଅ । ଜୀବିତ ମୃତ ଲୋକନାଥ କହିଲା, ମୁଁ ଏହାଙ୍କର ପୁଅ । ଯେ ବହୁତ ଧନ ବହି ଆଣିଥିଲା ବାପ ମା କହିଲେ, ଏହି ଆମର ପୁଅ । ଗ୍ରାମ-ଲୋକେ କହିଲେ ଦୁହେଁ ତ ସମାନ ଦିଶୁଛନ୍ତି—କିଏ ହେବେ ଆମ୍ଭେ ନିଷ୍ପତ୍ତି କରି ପାରିବୁ ନାହିଁ । ଏପରି ଘଟନା ଦେଖି ଶୁଆ କହିଲା, ଏ ତ ବଡ଼ ଦୁର୍ଘଟଣା ହେଲା, କାହା କଥା କାହା ସଙ୍ଗେ ମିଳୁ ନାହିଁ । ଏଥିରେ ହଲପ କରାଇବା । ଏପରି ହଲପ ହେବ ଯେ ଗୋଟିଏ ଗଡ଼ୁଆ ହେବ; ସେ ଗଡୁର ମୁହଁବାଟେ ପଶି ନାକବାଟେ ଯେ ବାହାରିବ ସେ ହରିମିଶ୍ରଙ୍କ ପୁଅ ହେବ—ସେପରି ଯେ ନ କରିବ ତାକୁ ଶୂଳ ଦିଆଯିବ । ଏହା ଶୁଣି ମନୁଷ୍ୟ ଲୋକନାଥ କହିଲା, ମୁଁ ଏହା କରି-ପାରିବି ନାହିଁ । ତହୁଁ ଭୂତ ଲୋକନାଥ କହିଲା, ଦେଖ ମୁଁ ଗଳି ଯାଉଅଛି । ଏହା କହି ପବନସ୍ୱରୂପ ହୋଇ ଗଳିଯିବା ବେଳକୁ ଶୁଆ ନିଃଶବ୍ଦ କରିଦେଲା ଯେ, ସେ ଆଉ ଭିତରୁ ବାହାରିଲା ନାହିଁ । ତା ପରେ ହରିମିଶ୍ରଙ୍କୁ ଶୁଆ କହିଲା, ତୁମ୍ଭର ପୁଅ ତ ବାହାରିଲା ନାହିଁ । ଦେଖ ସେ ଭିତରେ କଣ କରୁଅଛି ? ହରିମିଶ୍ରେ ହାତ ଭର୍ତ୍ତି କଲେ ଯେ ଗଡୁ ଭିତରୁ ହାଡ଼ ଖଣ୍ଡେ ବାହାରିଲା । ଏହା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଶୁଆ କହିଲା, କଣ ଦେଖୁଅଛ ? ସେ ଗୋଟିଏ ବ୍ରହ୍ମରାକ୍ଷସ, ନୋହିଲେକି ତନ୍ତୁଳଗଛ, ଶାଳଗଛ, ତାଳଗଛ, ଉପାଡ଼ି ଆଣିଥାନ୍ତା ? ଆଉ କେତେ ଦିନ ଥିଲେ ହରିମିଶ୍ରଙ୍କର ବଂଶ ଖାଇ ଗ୍ରାମଯାକ ଖାଇ-ଥାନ୍ତା । ଏହା ଶୁଣି ସମସ୍ତେ ଶୁଆକୁ ସାଧୁ ସାଧୁ କହିଲେ । ତା ପରେ ହରିମିଶ୍ରେ ନିଜ ପୁଅକୁ ସଙ୍ଗେ ନେଇ ଘରକୁ ଗଲେ । ତା କର୍ମରୁ ତ ବ୍ରହ୍ମରାକ୍ଷସ ଅଚଳ ସମ୍ପତ୍ତି ଠୁଳ କରିଥିଲା, କିଛିଦିନ ଐଶ୍ୱର୍ଯ୍ୟ ଭୋଗ କଲେ । ଏହାପରେ ରାଣୀମାନେ ବିନୟୀ ହୋଇ ଶୁଆକୁ ପଚାରିଲେ, ହେ ମହାତ୍ମା, ତୁମ୍ଭେ ପକ୍ଷିଜୀବ କି ଦେବତା ଆମେ ଜାଣି ପାରୁ ନାହୁଁ । ମାତ୍ର ଗୋଟିଏ କଥା ପଚାରିବୁଁ, ସତ୍ୟ କହିବ । ଆମ୍ଭ ରଜା ତୀର୍ଥ କରି

ଯାଇଥିଲେ, ଲେଉଟି ଆସିବାବେଳେ ରାଜକୀୟ ପ୍ରକାରେ ବାଦ୍ୟାପନା ନ ଦେଇ, ଆସିବାକ୍ଷଣି ସିଂହାସନରେ ବସିଲେ । ଏହା ଦେଖି ଏଥିରେ କଣ କାରଣ ଅଛି ବୋଲି ଅନୁମାନ କରି ଅମ୍ଭେ କହିଲୁ, ଆପଣ ତୀର୍ଥ କରି ଯିବାରୁ ଅମ୍ଭେମାନେ ଗୋଟିଏ ବ୍ରତ କରିଅଛୁଁ । ତାହା ପୂର୍ଣ୍ଣ ନ ହେବାଯାଏ ଭିତରକୁ ଆସିବ ନାହିଁ । ସେ ଦିନୁ ସେ ଭିତରକୁ ଆସି ନାହାନ୍ତି । ଏଥିର କଣ କାରଣ ଥିଲେ କହିଦିଅ । ଏହା ଶୁଣି ଶୁଆ ଦୀର୍ଘ ନିଶ୍ୱାସ ଛାଡ଼ି ମୁଖରେ ରାମ ରାମ ଉଚ୍ଚାରି କହିଲା—

ଧର୍ମୋ ରକ୍ଷତି ଧାର୍ମିକଂ ।

ଧାର୍ମିକ ଲୋକକୁ ଧର୍ମ ରକ୍ଷା କରନ୍ତି । ମୁଁ ତୁମ୍ଭର ରାଜା । ମନ୍ତ୍ର ବଳରେ ଭଣ୍ଡାରଠୋକା ମୋ ଦେହରେ ପଶି ଆସିଅଛି । ସେ ଯେବେ ତୁମ୍ଭମାନଙ୍କୁ ଛୁଇଁ ନାହିଁ, ଏ ବଡ଼ ଭାଗ୍ୟର କଥା । ଏବେ ଗୋଟିଏ କଥା କର, ସବୁ ରାଣୀଯାକ ବେଶଭୂଷା ହୋଇ ସେ ଭଣ୍ଡାର ରଜାକୁ ଭିତରକୁ ଡକାଅ । ତାକୁ କହିବ, ଆଜି ଆମ୍ଭର ବ୍ରତ ପୂର୍ଣ୍ଣ ହେଲା । ଆପଣ ଅନ୍ତଃପୁରେ ବିହାର କରିବେ, ମାତ୍ର ଗୋଟିଏ ଅପୂର୍ବ କଥା ଆମ୍ଭଙ୍କୁ ଦେବେ । ମଲା ଛେଳି ଗୋଟିଏ ଜୀବ ପାଇବ । ଅମ୍ଭେ ତାକୁ ଦେବୀଙ୍କ ନିକଟରେ ବଳି ଦେଇ ବ୍ରତ ପୂର୍ଣ୍ଣ କରିବୁଁ । ଏପରି ଶୁଣିଲେ ସେ ତତ୍‌କ୍ଷଣେ ନିଜ ଦେହରୁ ଆସି ଛେଳି ଶବରେ ପଶିବ । ସେ ସମୟରେ ମୁଁ ନିଜ ଦେହ ପାଇବି । ଏହା ଶୁଣି ରାଣୀମାନେ ମନୋହର ବେଶ ହୋଇ ଭଣ୍ଡାର ରଜାକୁ ଡକାଇ ଭିତରେ କ୍ରୋଧ ଥାଇ ଉପରେ ମନ୍ଦହାସ କରି ଯେପରି ଶୁଆ ଶିଖାଇଥିଲା ସେହିପରି ସବୁ କହିଲେ । ଭଣ୍ଡାର ତ ସାତ ଜନ୍ମରେ ରାଣୀମାନଙ୍କୁ ଦେଖି ନ ଥିଲା । ସେଠାରେ ଦେଖି ଏକବାର ମୋହିତ ହୋଇ କହିଲା—ଏଥିରେ କିଛି ଚିନ୍ତା କର ନାହିଁ । ଏହା କହି ନିଜେ ଏକ ଛେଳି ଆଣି ତାର ବେକ ମୋଡ଼ି ମାରିଲା, ଆଉ ରାଣୀମାନଙ୍କୁ କହିଲା—ଦେଖ ଏଠା ମଲା ଛେଳି, ପଡ଼ିଅଛି, ଆଉ ଦଣ୍ଡକ ଭିତରେ ଜୀବ ପାଇବ । ଏହା କହି ସେଠାରୁ ଯାଇ ଉପର ମହଲରେ କବାଟ ବାଟ ବନ୍ଦ କରି ଗଜଦନ୍ତ ପଲଙ୍କ

ଉପରେ ଶୋଇ ନିଜ ଦେହରୁ ଜୀବ ନେଇ ମଲା ଛେଳି ଦେହରେ ରଖିବାରୁ ତତ୍କ୍ଷଣେ ମଲା ଛେଳି ଜୀବ ପାଇ ମେଁ ମେଁ ଡାକ ଦେଲା । ଏ ସମୟରେ ରାଜା ଶୁଆ ଦେହ ଛାଡ଼ି ନିଜ ଦେହରେ ଯାଇ ପଶିଗଲେ । ସେଠାରୁ ଉଠି ଆସି ସେ ଛେଳିକୁ କହିଲେ । କି ରେ ଭଣ୍ଡାରି ଟୋକା, ଆମ୍ଭେ ତୋତେ ବିଶ୍ୱାସ କରିବାରୁ ଏତେ ଦୂର ଶାସ୍ତି ଦେଲୁ । ଏବେ ଇଷ୍ଟଦେବତାଙ୍କୁ ସୁମରଣା କର । ଏହା କହି ସିଂହଦ୍ୱାରେ ଶୂଳରେ ବସାଇଲେ—

ମିତ୍ରଦ୍ରୋହୀ କୃତଘ୍ନଶ୍ଚ ଯେ ଚ ବିଶ୍ୱାସଘାତକା,
ତେ ନରା ନରକଂ ଯାନ୍ତି ଯାବଚନ୍ଦ୍ର ଦିବାକରୌ ।

ମିତ୍ରଦ୍ରୋହୀ, କୃତଘ୍ନ ଏବଂ ବିଶ୍ୱାସଘାତୀ, ଏମାନେ ସୂର୍ଯ୍ୟ ଚନ୍ଦ୍ର ଥିବାଯାକେ ନରକ ଭୋଗ କରନ୍ତି । ଭଣ୍ଡାରି ମହାପାପୀ ଆଉ ବିଶ୍ୱାସ-ଘାତକ—ଏ ହେତୁରୁ ତାର ଦେହରୁ ଜୀବ ଯାଉ ନାହିଁ । ଶୂଳରେ ବସି କଷ୍ଟ ଭୋଗ କରିବାରୁ ମେଁ ମେଁ ହେଉଅଛି ।

ଏହିଠାରେ ଅବୋଲକର କାହାଣୀର ପ୍ରଥମ ତରଙ୍ଗ ଶେଷ ହେଲା ।



# ଲଙ୍କାମରିଚ ଧୂଆଁ କଥା

ସେଠାରୁ ସାମନ୍ତ ଅଜ ଅବୋଲକରା ଯାଉ ଯାଉ ଚନ୍ଦ୍ରକୂଟ ନାମକ ଦେଶରେ ପହଞ୍ଚିଲେ । ଦେଖିଲେ ଯେ ମଧୁବନ ନାମରେ ଏକ ତୋଟା ଅଛି । ପତ୍ର ଗହଳରେ ସୂର୍ଯ୍ୟ କିରଣ ପଡ଼ୁ ନାହିଁ । ତାର ନିକଟରେ ଗୋଟିଏ ପୁଷ୍କରିଣୀ ଅଛି, ଜଳ ଅତି ନିର୍ମଳ । ସାମନ୍ତ କହିଲେ, ଅଜ ଏହିଠାରେ ରହିବା । ଲୁଗାପଟା ରଖି ସାମନ୍ତ ସ୍ନାନ କରିବାକୁ ଗଲେ । ବାରିକ ସୌଦା କିଣିବାକୁ ଗଲା । ଚନ୍ଦ୍ରକୂଟନଗରରୁ ସୌଦାପତ୍ର କିଣି ଫେରୁଥିଲା, ଏ ନଗର ଟିକିଏ ବୁଲି ଦେଖିବ । ଏପରି ଦେଖୁ ଦେଖୁ ନଗର ପ୍ରାନ୍ତରେ ଦେଖିଲା, ଗୋଟିଏ ମୃଦାଘର ଅଛି. ତା ଭିତରେ କେହି ଜଣେ ଲୋକ ଅଛି, ସେ ଘର ଭିତରକୁ ଗୋଟିଏ ନଳ ଅଛି, ସେ ବାଟେ ଲଙ୍କାମରିଚ ଧୂଆଁ ଦିଆ ହେଉଅଛି । ଭିତରେ ଥିବା ଲୋକଟି ପ୍ରାଣ ଶଙ୍କଟରେ ରଡ଼ି କରୁଅଛି । ଅବୋଲକରା ଏହା ଦେଖି ଯିଏକୁ ତାକୁ ପଚାରିଲା—ଏପରି କାହିଁକି ହେଉଅଛି ? ସେମାନେ କହିଲେ; କାହିଁକି ହେଉଅଛି ଆମ୍ଭେ ଜାଣି ନାହୁଁ । ମାନ୍ୟ ପୂର୍ବରୁ ଏପରି ଅଛି । ଅବୋଲକରା ସେଠାରୁ ଆସି ସାମନ୍ତଙ୍କ ପାଖରେ ସଉଦାପତ୍ର ଥୋଇ କହିଲା, ଅଜ ମୋର ଗ୍ରାମକୁ ଯିବାର ନିଷ୍ଟୟ । ସାମନ୍ତ କହିଲେ, କାହିଁକି ? କଣ ଦେଖିଲୁ କି ? ବାରିକ କହିଲା, ଏହି ନଗର ଶେଷରେ ଗୋଟିଏ ମୃଦାଘର ଭିତରେ ଜଣେ ଲୋକ ରଡ଼ି କରୁଅଛି । ଅନବରତ ସେ ଘରକୁ ଲଙ୍କାମରିଚ ଧୂଆଁ ଦିଆହେଉଅଛି । ଏଥିର କାରଣ କହିଲେ କହ, ନୋହିଲେ ମୋ ବାଟେ ମୁଁ ଯାଉଅଛି । ଏହା ଶୁଣି ସାମନ୍ତ କହିଲେ—

ପକା କମ୍ବଳ ପୋତ ଛତା
ଶୁଣୁ ଅବୋଲକରା ତହିଁର କଥା ।

ସୌରାଷ୍ଟ୍ର ନାମରେ ଗୋଟିଏ ଦେଶ ଥିଲା । ତହିଁରେ ବୀରସେନ ନାମକ ଜଣେ ରାଜା ଥିଲେ । ତାଙ୍କୁ ପଞ୍ଚଷଠି ବର୍ଷ ହେବାବେଳେ ତାଙ୍କର ରାଣୀ ମରିଗଲେ । ସେ ସମୟ ରାଜାଙ୍କର ଅଠର ବର୍ଷର

ଗୋଟିଏ ପୁତ୍ର ଥିଲେ । ରାଣୀ ମର ଯିବାରୁ ରାଜା ପୁନର୍ବାର ବିବାହ ହେବାକୁ ଚେଷ୍ଟା କଲେ । ଏହା ଶୁଣି ପୁଅ କହଲେ, ତୁମେ ଆଉ ବିବାହ ହୁଅ ନାହିଁ । ଶାସ୍ତ୍ର ଲେଖିଛନ୍ତି—

"ବୃଦ୍ଧସ୍ୟ ତରୁଣୀ ବିଷଂ ।"

ବୃଦ୍ଧ ଲୋକର ଯୁବତୀ ବିଷ ପ୍ରାୟ । ତୁମ୍ଭେ ଏ ବୟସରେ ବିବାହ ହେବାର ଠିକ ନୁହେ । ରାଜା ଏହା ନ ଶୁଣି ବିବାହ ହେବାପାଇଁ ଗଲେ । ଏଣେ ରାଜପୁତ୍ର ବିଚାର କଲେ, ପିତା ଯଦି ମୋ କଥା ରକ୍ଷା ନ କଲେ ମୁଁ ଆଉ ଏହାଙ୍କ ମୁଖ ଚାହିଁବି ନାହିଁ । ତା ପରେ ମନ୍ତ୍ରୀପୁତ୍ରକୁ ସଙ୍ଗରେ ନେଇ ଦେଶାନ୍ତରକୁ ଚାଲିଗଲେ । ଏଣେ ରାଜା ବିଭାହୋଇ କନ୍ୟା ନେଇ ଫେରି ଆସି ଦେଖିଲାବେଳକୁ ଘରେ ପୁଅ ନାହିଁ । ବିଚାର କଲେ, ରାଜ୍ୟ-ଶାସନ-ସମର୍ଥ-ପୁତ୍ର ଯଦି ଚାଲିଗଲା ମୋର ବିବାହ କରିବାରେ କିଣ ସୁଖ, ଆଉ ଜୀବନରେ କି ଆଶା ? ଏପରି ଶୋକରେ ସନ୍ତପ୍ତ ହୋଇ ଦୂତ ପେଷି ବହୁତ ଖୋଜାଇଲେ । ଖୋଜ ଖୋଜି କିଛି ସନ୍ଦେଶ ନ ପାଇ ଶୋକଜଳରେ ବୁଡ଼ି ରହିଲେ । ତେଣେ ରାଜକୁମାର ମନ୍ତ୍ରୀପୁତ୍ର ସହିତ ବୁଲି ବୁଲି ଅନେକ ଦେଶ ଦେଖିଲେ । ତାପରେ ଧବଳପୁର ନାମକ ଦେଶରେ ପହଞ୍ଚିଲେ । ସେହି ଧବଳପୁର ନୃପତି ଗୋଟିଏ ଛତ୍ରଘର କରିଥାନ୍ତି, ସେହି ଘରଟି ପାଞ୍ଚ ମହଲା । ଯେ ଯେଉଁଭଳି ଲୋକ ତାକୁ ସେଭଳି ମହଲାରେ ବସା ଦିଅନ୍ତି । ଏ ତ ରାଜପୁତ୍ର, ଏହାଙ୍କର ରମଣୀୟ ଆକୃତି ଦେଖି ଉପର ମହଲାରେ ଏହାଙ୍କୁ ବସା ଦେଲେ । ସେହିଠାରେ ମନ୍ତ୍ରୀପୁତ୍ର ସହିତ ରାଜକୁମାର ରହିଥାନ୍ତି । ଧବଳପୁର ରାଜାଙ୍କର ବିଶାଳ କୋଶ ଦେଶ, ତାଙ୍କର ପୁତ୍ର ନ ଥାଏ । ନଳିନୀପ୍ରଭା ନାମରେ ଗୋଟିଏ କନ୍ୟା ଥାଏ । ତାର ରୂପକୁ ଏ ଜଗତରେ ପ୍ରତିତୁଲ୍ୟ ନ ଥିଲା । ସମତୁଲ୍ୟ ବର ନ ପାଇ ତାକୁ ରାଜା ବିବାହ ଦେଇ ନ ଥିଲେ । ଦିନେ ସେ କନ୍ୟା ଅଟ୍ଟାଳୀ ଉପରେ ବିହାର କରୁଥିଲା । ଦୈବରେ ଏ ବିଦେଶୀ ରାଜପୁତ୍ର ଉପରେ ତାର ଦୃଷ୍ଟି ପଡ଼ିଲା । ଦେଖି ବିଚାର କଲା, ଏ ପୁରୁଷ ଏଠାକୁ କାହୁଁ ଆସିଲେ ? ଏ ତ ସ୍ୱର୍ଗର ଗନ୍ଧର୍ବ ପରି ଦିଶୁଅଛନ୍ତି । ଈଶ୍ୱର ଯଦି ଦୟା କରିବେ ତା ହେଲେ ମୁଁ ଏହାଙ୍କୁ

ନିଶ୍ଚୟ ବିବାହ ହେବ । କନ୍ୟା ଏପରି ଭାବୁ ଭାବୁ ରାଜପୁତ୍ରଙ୍କ ଦୃଷ୍ଟି ମଧ୍ୟ ସେ କନ୍ୟା ଉପରେ ପଡ଼ିଲା । ଦେଖି ନିର୍ନିମେଷ ହୋଇ ବିଚାରି କଲେ, ଏ ନିଶ୍ଚୟ ରାଜକନ୍ୟା । ଏପରି ସୁନ୍ଦରୀ ଦେଖିବା ଦୂରେ ଥାଉ, ପୁରାଣମାନଙ୍କରେ ମଧ୍ୟ ଶୁଣା ନ ଥିବ । ଯଦି ମୋର ପୂର୍ବଭାଗ୍ୟ ଥିବ, ଏହାକୁ ବିବାହ ହେବ । ଏହିପରି ଦୁହେଁ ଦୁହିଙ୍କଠାରେ ଆଶା ରଖି ଯେ ଯାହା ସ୍ଥାନକୁ ଚାଲିଗଲେ । ରାଜପୁତ୍ର ସେ କନ୍ୟାର ରୂପରାଶି ମନରେ ଅତ୍ୟନ୍ତ ଭାବିବାରୁ ମୁଖ ଶୁଖିଗଲା । ସେ ଚିନ୍ତାମଗ୍ନ ହୋଇ ବସିଛନ୍ତି ଏ ସମୟରେ ମନ୍ତ୍ରିପୁତ୍ର ଆସି ଦେଖିଲା ଯେ, ରାଜପୁତ୍ର ଚିନ୍ତାର୍ଥୀ ହୋଇ ବସିଅଛନ୍ତି । ସେ ପଚାରିଲା, ମହାରାଜ ! ଆଜ ଆପଣଙ୍କର ମନରେ କାହିଁକି ହର୍ଷ ନାହିଁ ? କୌଣସି ଗୁରୁତର କାର୍ଯ୍ୟ ଭାବିଲା ପରି ଚିନ୍ତାମଗ୍ନ ହୋଇ ବସିଅଛନ୍ତି ? ରାଜପୁତ୍ର କହିଲେ ତାହା ସତ୍ୟ । କିନ୍ତୁ ଭାବିଲେ କଅଣ ହେବ ? ତାହା ତ ପ୍ରାପ୍ତ ହେବ ନାହିଁ । ମନ୍ତ୍ରୀପୁତ୍ର କହିଲା, ବୁଦ୍ଧି ଥିଲେ ଜଗତରେ ଅପ୍ରାପ୍ୟ ବା ଅସାଧ୍ୟ କିଛି ନାହିଁ ।

ବୁଦ୍ଧିର୍ଯସ୍ୟ ବଲଂ ତସ୍ୟ ନିର୍ବୁଦ୍ଧେସ୍ତୁ କୁତୋବଲଂ ।
ପଶ୍ୟ ସିଂହୋ ମଦୋନ୍ମତ୍ତଃ ଶଶକେନ ନିପାତିତଃ ॥

ବୁଦ୍ଧି ଯାହାର ଅଛି ବଳ ତାର ଅଛି । ବୁଦ୍ଧି ନ ଥିଲେ ବଳ କାର୍ଯ୍ୟ କରେ ନାହିଁ । ଦେଖ ଉନ୍ମତ୍ତ ସିଂହକୁ ବୁଦ୍ଧି ଥିବାରୁ ଶଶକ ଜୀର୍ଣ୍ଣକୂପରେ ପକାଇ ନାଶ କରିଥିଲା । ଏ ହେତୁରୁ ତୁମ୍ଭର ମନୋଗତ ଭାବ ଥରେ ମୋତେ କହିଲେ, ମୁଁ ତାର ସାଧନ ଉପାୟ କରିବ । ଏହା ଶୁଣି ରାଜପୁତ୍ର କହିଲେ, ଏହି ଧବଳଗିରି ରାଜାଙ୍କର ଗୋଟିଏ କନ୍ୟା ଅଛି । ମୁଁ ଆଜ ତାକୁ କୋଠା ଉପରେ ଦେଖିଲି । ସେତିକିବେଳୁ ମୋର ମନ ପ୍ରାଣ ତାଠାରେ ନିମଗ୍ନ ହୋଇ ରହିଅଛି । ଯଦି ତୁମ୍ଭର ବୁଦ୍ଧି ବଳରେ ମୁଁ ତାକୁ ବିଭାହୋଇ ପାରିବି, ତା ହେଲେ ସ୍ୱର୍ଗସମ୍ପଦ ପାଇବାଠାରୁ ଅଧିକ ସନ୍ତୋଷ ହେବ । ଏହା ଶୁଣି ମନ୍ତ୍ରୀପୁତ୍ର କହିଲା, ଏ କଣ କଷ୍ଟର କଥା ? ରାଜପୁତ୍ର ରାଜକନ୍ୟାକୁ ବିଭା ହେବେ ନାହିଁ କି ? ଆପଣ ସୁସ୍ଥଚିତ୍ତ ହୁଅନ୍ତୁ, ମୁଁ ତାର ଯତ୍ନ କରୁଅଛି । ଏହା କହି ମନ୍ତ୍ରୀପୁତ୍ର ସେଠାରୁ ଯାଇ ବାଟରେ ଦେଖିଲା, ଏକ ମାଲୁଣୀ ବୁଢ଼ୀ ଡାଲାରେ ଫୁଲ

ଧରି ରାଜାଙ୍କ ନବର ଅନ୍ତଃ ଯାଉଅଛୁ । ତାଙ୍କୁ ପଚାରିଲା, କାହିଁ ମାଉସି, ଫୁଲ ଧରି କୁଆଡ଼େ ଯିବୁ କି ? ମାଲୁଣୀ କହିଲା —ରଜାଘର ଖଟଣିଫୁଲ ନିତ ପ୍ରତ ଦଏଁ । ରଜା, ରାଣୀ ଏବଂ କେମାଙ୍କ ପାଖାଶେ ନେଉଅଛି । ମନ୍ତ୍ରୀପୁତ୍ର କହିଲା, ମାସରେ କେତେ ଟଙ୍କା ଦରମା ପାଉ ? ସେ କହିଲା, ପାଞ୍ଚଟଙ୍କା ପାଏଁ । ମନ୍ତ୍ରୀପୁତ୍ର କହିଲା—ଆଜି ତୋତେ ଦଶଟଙ୍କା ଦେବି, ମୋର ଗୋଟିଏ ବୋଲ କରିବୁ କି ? ମାଲୁଣୀ କହିଲା କଣ କରିବ ? ମନ୍ତ୍ରୀପୁତ୍ର କହିଲା, ମୋର ବସାକୁ ଚାଲ, ଯାହା କହିବି କରିବ । ଦୁହେଁ ମିଶି ବସାକୁ ଗଲେ । ମନ୍ତ୍ରୀପୁତ୍ର କେତକୀ ପାଖୁଡ଼ାରେ ... ଖଣ୍ଡିଏ ଲେଖି ତାର ଉପରେ ଅଁଳାଫୁଲରେ ଗୋଟିଏ ଝରା ନିର୍ମାଣ କରି ମାଲୁଣୀକି ଦେଲା । ତାକୁ ଦଶ ଟଙ୍କା ଦେଇ କହିଲା, ଏ ଝରାଟି କେମାକୁ ଦେବୁ । ସେ ପଚାରିଲେ କହିବୁ, ମୋର ନାନ ଭଉଣୀ ଅସିଥିଲା, ସେ ଏହି ଫୁଲଝରାଟି ଗୁନ୍ଥିଅଛି । ତହୁଁ ମାଲୁଣୀ ଯାଇ କେମାଙ୍କୁ ଫୁଲ ଦେବାରୁ କେମା ନୂତନ ଝରାଟି ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲେ, କାହିଁ ବୁଢ଼ି, ଆଜି ଏ ଫୁଲଝରାଟି କେଉଁଠାରୁ ଅଣିଲୁ ? ମାଲୁଣୀ ହାତଯୋଡ଼ି କହିଲା, ମଣିମା ! ସେ ଝରାଟି ମୋର ଭଉଣୀ ଅପଣଙ୍କୁ ଭେଟି ଦେଇଅଛି । କେମା କହିଲେ, ତୁ ଏହିବାଟେ ଫେରି ଅସିବୁ । ମୁଁ ତା ପାଇଁ କିଛି ଖଜା ମିଠାଇ ଦେବି, ନେଇଯିବୁ । ମାଲୁଣୀ ସେଠାରୁ ରାଣୀ ଓ ରାଜାଙ୍କୁ ଫୁଲ ଦେବାପାଇଁ ଚାଲିଗଲା । ତା ପରେ କମଳାପ୍ରଭା ଦେଖିଲା ଯେ ସେହି ଝରା ଭିତରେ କେତକୀ ପାଖୁଡ଼ାରେ ଅକ୍ଷର ଲେଖା ହୋଇଅଛି । ତକ୍ଷଣେ ବାହାର କରି ପଢ଼ିଲା, "ଅମ୍ଭେ ସୌରାଷ୍ଟ୍ର ରାଜାଙ୍କର କ୍ୟେଷ୍ଠକୁମର, ଦେଶ ଫେରି ଅସିଥିଲୁ, ଦୈବରେ ଛତ୍ରଘରେ ରହିଅଛୁ । ଆଜି କୋଠା ଉପରେ ତୁମ୍ଭଙ୍କୁ ଦେଖି ବଡ଼ ଅନନ୍ଦ ହେଲୁ । ଯଦି ତୁମ୍ଭେ ଦୟାକରି ଅମ୍ଭଙ୍କୁ ବିବାହ ହେବାକୁ ଅଙ୍ଗୀକାର କର, ତାହାହେଲେ ଜୀବନ ରହିବ । ନୋହିଲେ ତୁମ୍ଭ ବିଚ୍ଛେଦରେ ଜୀବନ ରଖି ପାରିବ ନାହିଁ ।" ଏପରି ପାଠକରି ମନେ ମନେ ବିଚାର କଲା—

ମନ୍ତ୍ର ଲେଉଟୁଥାଏ କାକର ପାଣି
ବଇଦ କହିଲା ଦଅ ତୋଗଣି ।

ମୁଁ ଯାହା ଭାବୁଥିଲି ଅନାୟାସରେ ତାହା ମିଳିଲା । ମୋର ମନ ଜାଣି ଭଗବାନ ମୋତେ ଦୟା କଲେ । ଏହା ବଗିଚ୍ ସେ ମଧ୍ୟ ଭିତରେ ଶଠ ରଙ୍ଗ ବଣିକ ଭାବରେ ଗୋଟିଏ ଫୁଲଝର ଗୁନ୍ଥିଲା । ଏ ସମୟରେ ମାଲୁଣୀ ଆସିବାରୁ ନଳିନୀପ୍ରଭା ସେ ଝରଟି ତାକୁ ଦେଇ କହିଲା, ତୁ ଏ ଝରଟି ନେଇ ତୋ ଭଉଣୀକୁ ଦେବୁ । ତାର ଝରଠାରୁ ମୋର ଭଲ ହେଲା କ ନାହିଁ ସେ ଦେଖିଲେ ଜାଣିବ । ତାପର ଖଜା ମିଠାଇ ଦେଇ ମାଲୁଣୀକି ବିଦାୟ କଲା । ମାଲୁଣୀ ମନେ ମନେ ବିଚାର କଲା; ମୋର ଗ୍ରହ ଭଲ ପଡ଼ିଲା । ତେଣୁ ଟଙ୍କା ପାଇଲି, ଏଣୁ ଖିଆ ପାଇଲି । ଏହାପର ମାଲୁଣୀ ଯାଇ ସେ ଝରଟି ମନ୍ତ୍ରୀପୁତ୍ରକୁ ଦେଇ ସବୁକଥା କହିଲା । ମାଲୁଣୀ ଯିବାପର ମନ୍ତ୍ରୀପୁତ୍ର ଶଠ ପଢ଼ିଲା ଯେ, ତହିଁରେ ଲେଖା ହୋଇଅଛି—'ତୁମ୍ଭେ ରାଜପୁତ୍ର ହୁଅ ଅଥବା ଅନ୍ୟ ଜାତି ହୁଅ, ତୁମ୍ଭଙ୍କୁ ଦେଖିଲାବେଳୁ ମୁଁ ବଳଅଛି । ଏଥିରେ କିଛି ବିଚାର ନ କରି ଆଜି ଅର୍ଦ୍ଧରାତ୍ର ସମୟରେ ରାଜନଗର ପାଣିଦ୍ୱାର ଠାରେ ପ୍ରବେଶ ହେବ । ମୁଁ ସେଠାରେ ତୁମ୍ଭଙ୍କୁ ଦେଖା କରିବି ।' ମନ୍ତ୍ରୀପୁତ୍ର ଏପରି ପାଠକରି ରାଜପୁତ୍ରଙ୍କୁ ସବୁ କହିଲା । ତା ପର ଦୁହେଁ ଭୋଜନ ଭଜନ ସାରି ବେଶଭୂଷା ହୋଇ ରାତ୍ର ଅର୍ଦ୍ଧ ହେବାର ଦେଖି ବାହାରିଲେ । କ୍ରମେ କ୍ରମେ ଯାଇ ପାଣିଦ୍ୱାରଠାରେ ପହଞ୍ଚିଲାବେଳକୁ ନଳିନୀପ୍ରଭା ମନୋହର ବେଶ ହୋଇ ଗୋଟିଏ ସଖୀର ହସ୍ତ ଧରି ଠିଆ ହୋଇଅଛି । ଏହାଙ୍କୁ ଦେଖି କହିଲା, ତୁମ୍ଭେ ଚୋର କି ଖଣ୍ଡି ଏଠାକୁ ନିଶାରାତ୍ରରେ କାହିଁକି ଆସିଅଛ ? ଏହା ଶୁଣି ରାଜପୁତ୍ର ତରସ୍ତ ହୋଇ ପଳାଇ ଯିବାକୁ ବାହାରିବାରୁ ମନ୍ତ୍ରୀପୁତ୍ର କହିଲା; ମହାରାଜ କିଛି ଭୟ ନାହିଁ । ଏଥିର କାରଣ ମୁଁ ଜାଣେ । ଯଥା—

ଅଶ୍ୱପ୍ଲୁତଂ ବାରିଦଗର୍ଜ୍ଜନଂ ଚ ସ୍ତ୍ରୀଣାଂ ଚରିତ୍ରଂ ଭବିତବ୍ୟତା ଚ
ଅବର୍ଷଣଂ ଚାପ୍ୟତି ବର୍ଷଣଂ ଚ ଦେବୋ ନ ଜାନାତି କୁତୋ ମନୁଷ୍ୟଃ ।

ଘୋଡ଼ାର ପ୍ଲୁତ, ମେଘର ଗର୍ଜନ, ସ୍ତ୍ରୀମାନଙ୍କର ଚରିତ୍ର, ଭବିଷ୍ୟତ କଥା, ବର୍ଷା ହେବା ଏବଂ ନ ହେବା ଏହା ଦେବତାମାନେ ଜାଣନ୍ତି ନାହିଁ । ଆଉ ମନୁଷ୍ୟମାନେ କିପରି ଜାଣିବେ ? ଏ ହେତୁ ଏହାଙ୍କ ଚରିତ୍ର ଅଗୋଚର । ଚାଲ ଆମ୍ଭର ବସାକୁ ଚାଲିଯିବା । ଏହା ଶୁଣି ନଳିନୀପ୍ରଭା ଅଳ୍ପ ହସି କହିଲା, ସ୍ତ୍ରୀମାନଙ୍କୁ ସ୍ୱାମୀ ଗୁରୁ କହନ୍ତି; କିନ୍ତୁ ପୁରୁଷମାନେ ଅତି ସ୍ୱାମୀ ଗୁରୁ । ଏହା କହି ଆସନ ଦେଇ ବସାଇଲା । ଆଉ କହିଲା-ରାଜପୁତ୍ର ! ଆଜିଠାରୁ ମୁଁ ତୁମ୍ଭର ହେଲି । ଏହିକ୍ଷଣି ତୁମ୍ଭ ସଙ୍ଗେ ସଙ୍ଗେ ଯାନ୍ତି, କେବଳ ମୋର ଆଉ ଭାଇ ଭଉଣୀ ନାହାନ୍ତି । ପିତା ଜାଣି ବିବାହ କଲେ ଏ ରାଜ୍ୟଟି ଯଉତୁକ ମିଳିବ । ତୁମ୍ଭେ ସେହି ଛିନ୍ନଘରେ ଥାଅ । ସତ୍ୟ କରୁଅଛି, ଆଜିଠାରୁ ତୁମ୍ଭେ ମୋର ପ୍ରାଣପ୍ରିୟ ହେଲ । ଏହା କହି ଗୋଟିଏ ପୁଷ୍ପହାର ରାଜାଙ୍କ ଗଳାରେ ଲମ୍ବାଇ ଦେଇ ଚାଲିଗଲା । ମନ୍ତ୍ରୀ ଓ ରାଜକୁମାର ଆନନ୍ଦରେ ନିଜ ନିବାସକୁ ଆସିଲେ । ରାତି ପାହିଲାରୁ ନଳିନୀପ୍ରଭା ସ୍ନାନ ଭୋଜନ ନ କରି ମୁଣ୍ଡାମାଡ଼ି ରଣଭଣ—ବାଳେଇ ଗୁହ ସଣସଣ; ଚାଲରେ ଛାତ ନାହିଁ; ଭଙ୍ଗା ଖଟ ଉପରେ ମୁହଁ ପୋତି ଶୋଇଲା । ଏହା ଦେଖି ତାର ସଖୀମାନେ କେତେ ଡାକିଲେ ଶୁଣିଲା ନାହିଁ । ରାଣୀ ମଧ୍ୟ ଡାକି ଡାକି ଥକିତ ହେଲେ; ତଥାପି ଶୁଣିଲା ନାହିଁ । ଦିନ ଦୁଇପହର ହେଲା, କେମାନଙ୍କର ମାଜଣା ମଣୋହି ବଢ଼ିଲା ନାହିଁ । ଏହା ଶୁଣି ରାଜା ଭିତରପୁରକୁ ବିଜେ କଲେ । ଦେଖିଲାବେଳକୁ ଝିଅ ରୋଷାଗାରରେ ଶୋଇଅଛି । ତାକୁ ଅନେକ ଆଶ୍ୱାସନା କରିବାରୁ ସେ କହିଲା, ମୁଁ ଚଉଦବର୍ଷ ହେଲା ଯୁବତୀ ହୋଇ ଘରେ ରହିଲି । ଶାସ୍ତ୍ର ଲେଖିଅଛି—ଅବିବାହିତା ଯୁବତୀକନ୍ୟା ଘରେ ରହିଲେ ପିତୃଲୋକେ ସେ ଘରେ ପାଣି ପିଅନ୍ତି ନାହିଁ । ଆଉ ବଡ଼ଲୋକେ କହନ୍ତି—ପ୍ରିୟେଷୁ ସୌଭାଗ୍ୟ ଫଳାହି ଚାରୁତା । ସ୍ତ୍ରୀମାନଙ୍କର ମନୋହର ରୂପ ଥାଏ; କିନ୍ତୁ ସ୍ୱାମୀ ନ ପାଇଲେ ସୌଭାଗ୍ୟବତୀ ହୁଅନ୍ତି ନାହିଁ । ଏ ହେତୁରୁ ମୁଁ ମନଦୁଃଖରେ ଶୋଇଅଛି । ଏହା ଶୁଣି ରାଜା ମନରେ ବଡ଼ ବିସ୍ମୟ ହୋଇ କହିଲେ, ମାତଃ ! ଯାହା କହିଲୁ ସେ ମିଥ୍ୟା ନୁହେଁ । ତୋର ସମାନ ବର କି

ମିଳିବାରୁ ବିଭାଘର କରି ନାହିଁ । ଆଜି ସ୍ନାନ ଭୋଜନ କର । କାଲି ଲକ୍ଷେରାଜା ବରଣ କରି ସ୍ୱୟମ୍ବର କରିବ । ତୋର ଇଚ୍ଛାରେ ଗୋଟିଏ ବର ବାଛି ବରିବୁ । ଏହା ଶୁଣି ନଳିନୀପ୍ରଭା ଆନନ୍ଦରେ ସ୍ନାନ କରିବାକୁ ଗଲା । ରାଜା ସେଠାରୁ ଯାଇ ମନ୍ତ୍ରୀମାନଙ୍କୁ ଡକାଇ କହିଲେ—କାଲି ଝିଅର ସ୍ୱୟମ୍ବର ହେବ । ସେଥିର ଯୋଗାଡ଼ ଆୟୋଜନ କର ଶୀଘ୍ର ରାଜାମାନଙ୍କୁ ନିମନ୍ତ୍ରଣ କର । ଆଜ୍ଞାପାଇ ମନ୍ତ୍ରୀମାନେ ସମସ୍ତ ନିର୍ବାହ କଲେ । ତା ପର ରାଜାମାନେ ନିମନ୍ତ୍ରଣ ପାଇ ନାନାଦି ଉତ୍ସବ ସହିତ ରଙ୍ଗସଭାରେ ପ୍ରବେଶ ହେଲେ । ନଳିନୀପ୍ରଭା ଛଦ୍ମଘରେ ଥିବା ରାଜକୁମାରଙ୍କୁ ଗୁପ୍ତ କରି ମାଲୁଣୀ ହସ୍ତରେ ଚିଠି ଦେଲା—କାଲି ରଙ୍ଗସଭା ହେବ, ତୁମ୍ଭେ ସଭା ଦେଖିବା ଛଳରେ ଯାଇ ସେଠାରେ ଉପସ୍ଥିତ ହେବ । ଏପରି ସମ୍ବାଦ ପାଇ ରାଜପୁତ୍ର ଓ ମନ୍ତ୍ରୀପୁତ୍ର ବୀରବେଶ ହୋଇ ରଙ୍ଗସଭାରେ ଯାଇ ପ୍ରବେଶ ହେଲେ । ଏହାପର ନଳିନୀପ୍ରଭା ପିତାଙ୍କ ଆଦେଶ ପାଇ ଦିବ୍ୟ ବେଶହୋଇ ସଖୀମାନଙ୍କ ସହିତ ବରଣମାଳା ଧରି ରଙ୍ଗସଭାରେ ପ୍ରବେଶ ହୁଅନ୍ତେ, ତାକୁ ଦେଖି ରାଜାମାନେ ବିଚାର କଲେ, ଏ ମର୍ତ୍ତ୍ୟ ଭୁବନର ଲକ୍ଷ୍ମୀ ସଦୃଶ ଦେଖାଯାଏ । ଏହା ପରି ସୁନ୍ଦରୀ ମର୍ତ୍ତ୍ୟପୁରରେ ଜନ୍ମ ହୋଇ ନାହିଁ । ଏ ଯାହାକୁ ବରଣମାଳା ଦେବ, ତାର ଜୀବନ ଧନ୍ୟ ହେବ । ଏପରି ରାଜାମାନେ ଭାବୁ ଭାବୁ ନଳିନୀପ୍ରଭା ସବୁ ରାଜାମାନଙ୍କୁ ଦେଖି ଦେଖି ପରିଶେଷରେ ସେହି ସୌରାଷ୍ଟ୍ର ରାଜକୁମାରଙ୍କ ଗଳାରେ ବରଣମାଳା ଦେଲା । ଏହା ଦେଖି ଅନ୍ୟ ରାଜାମାନେ ଲଜ୍ଜାରେ ମୁଖ ଶୁଖାଇ ଯେ ଯାହା ରାଜ୍ୟକୁ ଫେରି-ଗଲେ । ତା ପର ଧବଳପୁର ରାଜା ଆନନ୍ଦ ମନରେ ଜୁଆଁଇକୁ କୁଳ ଗୋତ୍ର ପଚାରିଲେ । ସୌରାଷ୍ଟ୍ର ରାଜକୁମାର ନିଜର ସମସ୍ତ ପରିଚୟ ଦେଲେ । ଏଥିରେ ଜ୍ୟୋତିଷମାନଙ୍କୁ ଡକାଇ ବିବାହ ତିଥି ଗଣିବାରେ ମାର୍ଗଶିର ଶୁକ୍ଲ ପଞ୍ଚମୀ ବିଚ୍ଛ ୧୮ ଦିନ ବିବାହ ଧରି ସ୍ଥିର ହେଲା । ତାପର ପୁତ୍ରର ବିବାହ ସକାଶେ ସୌରାଷ୍ଟ୍ର ରାଜାଙ୍କ ନିକଟକୁ ଦୂତ ପଠାଇଲେ । ସୌରାଷ୍ଟ୍ର ରାଜା ପୁତ୍ରକୁ ନ ପାଇ ହତପ୍ରାଣ ପରି ରହିଥିଲେ । ଦୂତ ମୁଖରୁ ପୁତ୍ରର ମଙ୍ଗଳକୃତ୍ୟ ଶୁଣି ଆନନ୍ଦକଲରେ

ବୁଡ଼ି ବହୁତ ଦାନ ଧର୍ମ କଲେ । ତା ପର ଚତୁରଙ୍ଗ ସୈନ୍ୟ ଘେନି ନାନା ଉତ୍ସବରେ ଯାଇ ଧବଳପୁରରେ ପ୍ରବେଶ ହେଲେ । ଦୁଇ ସମ୍ବନ୍ଧି ଭେଟ ହୋଇ ମହାଉତ୍ସବରେ ବଖରଘର ସାରିଲେ । ଚଉଠିଦିନ ଧବଳପୁର ରଜା ଜୁଆଁଇଁକୁ କହିଲେ, ମୋର ତ ପୁଅ ନାହିଁ । ମୁଁ ଥିବାଯାକ ରାଜତ୍ୱ କରୁଥିବ, ମୋ ଅନ୍ତେ ଏ ରାଜ୍ୟ ତୁମର ହେବ । ଏହା କହି ଧନ ରତ୍ନ, ଦାସ ଦାସୀ, ହାତୀ ଘୋଡ଼ା, ବସ୍ତ୍ର ଅଳଙ୍କାର ବହୁତ ଯଉତୁକ ଦେଲେ । ସମ୍ମାନ ପାଇ ସୌରାଷ୍ଟ୍ରରାଜା ସୈନ୍ୟବଳ ଚଲାଇ ଆଗରେ ବାହାରିଲେ । ସାଧାରଣ ଘରୁ ଝିଅଟିଏ ଗଲାବେଳେ ଘଡ଼ିଏ ଦୁଇଘଡ଼ି ଉଚ୍ଛୁର ହୋଇଯାଏ । ସେ ତ ରାଜାଘର କନ୍ୟା । ବାହାରୁ ବାହାରୁ କଳ୍ପକାଳ ଉଚ୍ଛୁର ହୋଇଗଲା । ରାଜପୁଅ ଘୋଡ଼ାରେ ଏବଂ କନ୍ୟା ସୁଆଁରେ ବସି ଗଲେ । ଯାଉଁ ଯାଉଁ ଆଗ ଯାଇଥିବା ଲୋକଙ୍କ ସଙ୍ଗେ ମିଶି ନ ପାରି ବାଟବଣା ହୋଇ ଅନ୍ୟବାଟେ ଚାଲିଗଲେ । ବୁଲି ବୁଲି ବେଳ ଦୁଇପ୍ରହର ହେଲା । ନନ୍ଦମାପ୍ରଭୁ ନିଜର ପତ୍ନୀକି କହିଲା, ମତେ ବଡ଼ ଭୋକ ଶୋଷ ଲାଗିଲା । ଏହା ଶୁଣି ରାଜପୁଅ କହିଲେ, ପିତା ସୈନ୍ୟ ଘେନି ଆଗେ ଚାଲିଗଲେ । ତାଙ୍କୁ ତ ଭେଟି ପାଇଲେ ନାହିଁ । ପଇସା କଉଡ଼ି ପାଖରେ ନାହିଁ । ମଙ୍ଗଳକୃତ୍ୟ ଅଳଙ୍କାର ଦେହରୁ ଦେବାକୁ ହେବ ନାହିଁ, କଅଣ କରିବା ? ତହୁଁ ସେ କନ୍ୟା କହିଲା—ମୋର ଗୋଟିଏ ପାଟଶାଢ଼ୀ ଅଛି । ସେ କଉଣସି ମଙ୍ଗଳକାର୍ଯ୍ୟରେ ଲାଗିନାହିଁ, ତାକୁ ନେଇ ବନ୍ଧା କରି ଜଳଖିଆ ପଦାର୍ଥ ଆଣିଲେ ଏଠାରେ ଜଳପାନ କରି ଯିବା । ଏହା ଶୁଣି ରାଜପୁଅ ସେହି ରାସ୍ତାରେ ଗଛମୂଳେ ଘୋଡ଼ା, ସୁଆଁରି ରଖାଇ ଗୌଡ଼ମାନଙ୍କୁ କହିଲେ ତୁମ୍ଭେ ଜଗିଥାଅ, ମୁଁ ଏହିକ୍ଷଣି ଜଳଖିଆ ଘେନି ଆସିବି । ଏହା କହି ଆଗେ ଦିଶୁଥିବା ଗ୍ରାମ ଭିତରକୁ ଗଲେ । ସେ ଗ୍ରାମରେ ଲକ୍ଷାଧିପତି ମହାଜନ ଅଛି । ତା ଦ୍ୱାରେ ଯାଇ କହିଲେ, ମହାଜନ । ଏ ଶାଢ଼ୀଟି ମୁଁ ବନ୍ଧା କରିବି, ରଖ । ମହାଜନ ଏହାଙ୍କର ରୂପ ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲା ଆପଣ କିଏ ? ଶାଢ଼ୀ କାହିଁକି ବନ୍ଧା କରିବେ ? ରାଜପୁଅ ନିଜର ପରିଚୟ ଦେଇ ସମସ୍ତ ହାଲ କହିଲେ । ମହାଜନ

ଶୁଣି ବହୁତ ସମ୍ମାନ କରି ଅସ୍ତମ ଚଉକି ଗୋଟିଏ ବସିବାପାଇଁ ଦେଲା । ଆଉ ଦୁଇଜଣ ଚାକରଙ୍କୁ ଡାକି କହିଲା; ଏହାଙ୍କୁ ଜଣେ ପଙ୍ଖା ଧରି ବିଞ୍ଚିବ, ଆଉ ଜଣେ ପାଦ ମଖାଳି ଦେବ । ସେ ଦୁଇଜଣ ସେହିପରି ତାଙ୍କ ସେବାରେ ଲାଗିଲେ । ଏ ତ ଭୋଗବିଳାସୀ ରାଜପୁତ୍ର, ପୁଣି ପଥଶ୍ରାନ୍ତ ହୋଇଥିଲେ । କ୍ରମେ କ୍ରମେ ନିଦ୍ରାଗତ ହେଲେ । ରାଜପୁତ୍ରଙ୍କୁ ନିଦ୍ରା ଲାଗିବାର ଦେଖି ମହାଜନ ଚାରିଜଣ ମାଇପି ଡାକି ଗୋଟିଏ ସୁଆରି ତାଙ୍କୁ ଦେଇ କହିଲା, ତୁମ୍ଭେ ବାଟବାଟେ ସୁଆରି ନେବ । ଏ ପାଟଶାଢ଼ୀ ଖଣ୍ଡି ନେଇଥିବ । ପୋଖରୀ କୂଳ ରାସ୍ତାରେ ରାଜକନ୍ୟା ସୁଆରିରେ ଅଛି । ତାକୁ କହିବ ତୁମ୍ଭ ଶ୍ୱଶୁର ଆମ୍ଭ ମହାଜନଙ୍କର ମିତ୍ର । ସେ ମହାଜନ ତୁମ୍ଭ ପତିଙ୍କି ଦେଖିବାକୁ ବଡ଼ ଆଗ୍ରହ କରି ଘରେ ରଖି-ଅଛନ୍ତି । ଆଉ ତୁମ୍ଭର ପତି ସୁଆରି ଦେଇ ଆମ୍ଭଙ୍କୁ ପଠାଇଲେ । ତୁମ୍ଭେ ବିଶ୍ୱାସ ଯିବାପାଇଁ ଏ ଶାଢ଼ୀଖଣ୍ଡି ଦେଇଅଛନ୍ତି । ତୁମ୍ଭେ ଚଞ୍ଚଳ ଏଥିରେ ବସିଲେ ଆମେ ବହିନେବୁ । ଆଜ ଓଳିକ ସଙ୍ଗାତ ଶ୍ୱଶୁର ଘରେ ରହି ସକାଳୁ ଦେଶକୁ ଚାଲିଯିବ । ଏପରି କହି ବାଟେବାଟେ ଘେନି ଆସିବ । ଏହା ଶୁଣି ସେମାନେ ଆନନ୍ଦରେ ସୁଆରି ନେଇ ଗଲେ । ନିଦ୍ରାଶକ୍ତି ଲୋକ ସ୍ଥାନେ ସ୍ଥାନେ ବିପଦରେ ପଡ଼େ । ଯଥା :—

ଷଡ଼୍‌ଦୋଷା ପୁରୁଷେଣେହ ହାତବ୍ୟା ଭୂତିମିଚ୍ଛତା ।
ନିଦ୍ରାତନ୍ଦ୍ରା ଭୟଂ କ୍ରୋଧୋ ଆଳସ୍ୟଂ ଦୀର୍ଘସୂତ୍ରତା ॥

ସମ୍ପତ୍ତି ଇଚ୍ଛା କରିବା ପୁରୁଷ ନିଦ୍ରା ତନ୍ଦ୍ରା ଭୟ କ୍ରୋଧ ଦୀର୍ଘସୂତ୍ର ଏବଂ ଅଳସ ଏହି ଛଅଟି ଦୋଷ ପରିତ୍ୟାଗ କରିବ । ତା'ପରେ ସେ ମାଇପିମାନେ ସୁଆରି ନେଇ ନଳିନୀପ୍ରଭାକୁ ମହାଜନ କହିଥିବା କୁଟ-ନୀତିଯାକ ସବୁ କହିଲେ । ସେ ତ ରାଜକନ୍ୟା, ତାକୁ ଏତେ ଛନ୍ଦକୁଟ ଜଣା ନାହିଁ । ସେ କଥାକୁ ବିଶ୍ୱାସ କରି ସୁଆରିରେ ବସିଲା । ସେ ମାଇପିମାନେ ବୋହି ନେଇ ମହାଜନ ଘରେ ଛାଡ଼ିଦେଲେ । ଏଣେ ଗୌଡ଼ମାନେ ତ ମହାମୂର୍ଖ । ସୁଆରି ବହି ବହି କାନ୍ଧ ପରାସ ହୋଇ-ଥିଲା । ଭଲ ସୁଆରିଟି ନେଇ ପଳାଇଗଲେ । ରାଜକନ୍ୟା ଘରକୁ ଆସିବାର ମହାଜନ ଦେଖି ତତ୍‌କ୍ଷଣ ଯାଇ ରାଜପୁତ୍ରକୁ କହିଲା, ଆପଣ

ଶୋଇଯିବାରୁ ଉଠାଇଲ ନାହିଁ । ଏହା କହି ଶାଢ଼ୀର ମୂଲ୍ୟ ଟ ୫୦୯ ଦେଲା । ରାଜପୁତ୍ର ଧଡ଼ପଡ଼ ହୋଇ ଉଠି ବଜାରରୁ ଜଲଖିଆ ଆଣି ଦେଖିଲାବେଳକୁ ଘୋଡ଼ାଟି ବନ୍ଧା ହୋଇଅଛି । କନ୍ୟା, ସୁଅଁର, ଗଉଡ଼ କେହି ନାହାନ୍ତି । ଏହା ଦେଖି ରାଜପୁତ୍ର ଏକବାରେ ପାଗଳ ହୋଇ ଦେହରୁ ବସ୍ତ୍ର ଅଲଙ୍କାର ସବୁ ବାହାର କରି ଫିଙ୍ଗିଦେଇ କୌପୁନ ଖଣ୍ଡେ ମାରି ଜଙ୍ଗଲରେ ପଶିଗଲା । ଏଣେ ସେ କନ୍ୟା ଆସିବାର ମହାଜନ ଦେଖି ମନରେ ବିଚାର କଲା, ଏ ତ ଦେବକନ୍ୟା ପରି ଦିଶୁଅଛି । ମୋର ଭାଗ୍ୟ ଥିବାରୁ ବୁଦ୍ଧିବଳରେ କୌଶଳ କରି ଏହାକୁ ପାଇଲି । ତା'ପରେ ନଳିନୀପ୍ରଭା ନିଜର ପତିକି ନ ଦେଖି ଚିନ୍ତାର୍ଥୀ ହୋଇ ବିଚାର କଲା, ମୁଁ ମନ୍ଦବୁଦ୍ଧି କରି ଏଠାକୁ ବିଶ୍ବାସରେ ଆସିଲି ଯେ କାଳେ ପ୍ରମାଦ ପଡ଼ିବ କି ? ଏପରି ମନରେ ଭାବି ମହାଜନଙ୍କୁ ଡାକି କହିଲା, ମୋର ପତି କାହାନ୍ତି ? ମହାଜନ କହିଲା, ଭୋଜନ ସାରି ପହଡ଼ି ଅଛନ୍ତି । ତୁମ୍ଭେ ଭୋଜନ ଭୁଜନ କର, ପରେ ଦେଖା ହେବ । ନଳିନୀପ୍ରଭା ଆଉ କଣ କରିବ ? ଯାହା ତାହା କରି ଭୋଜନ କଲା । ସନ୍ଧ୍ୟାସମୟ ହେବାରୁ ପୁଣି ମହାଜନକୁ ଡକାଇ ପଚାରିବାରୁ ସେ କହିଲା, ମୋର ଲକ୍ଷ ଲକ୍ଷ ଟଙ୍କାର ସମ୍ପତ୍ତି ପୂରିଅଛି, ତୁ ଯାହା ଇଚ୍ଛା କରୁଥିବୁ ସେହିକ୍ଷଣି ଦେଉଥିବି । ତୋ ପତି କଣ ମୋଠାରୁ ଅଧିକ ହେବ ? ନିଶ୍ଚିନ୍ତରେ ରହ, ଆଜଠାରୁ ଏ ଘର ସମ୍ପଦ ତୋର ସବୁ ହେଲା । ଏପରି ଶୁଣି ସେ କନ୍ୟାର ଏକାବେଳକେ ସହସ୍ର ବଜ୍ର ମୁଣ୍ଡରେ ପଡିଲା ପରି ବୋଧ ହେଲା । ଦେହଯାକ ସବୁ କମ୍ପିଲା । ତା'ପରେ ମନେ ମନେ ଧୈର୍ଯ୍ୟ ଧରି ବିଚାର କଲା, ବିପଦ ସମୟରେ କାତର ହେଲେ କଅଣ ହେବ ? ସୀତା ଠାକୁରାଣୀ ଧୈର୍ଯ୍ୟ ଧରି ଲଙ୍କାଗଡ଼ ଅସୁରପୁରରେ ରହିଥିବାରୁ ନିଜ ପତି ରାମଚନ୍ଦ୍ରଙ୍କୁ ପାଇଥିଲେ । ମୁଁ ଅଧୈର୍ଯ୍ୟ ହେଲେ ଏଠାରେ କଣ କରି ପାରିବି ? ଯାହାହେଉ ସେହି ଦୀନବନ୍ଧୁ ଜଗନ୍ନାଥଙ୍କୁ ଭରସା କରି ଉପାୟ କରିବି । ଏପରି ମନରେ ଭାବି କହିଲା, ମହାଜନ ! ତୁମ୍ଭେ ଶୁଣ, ବିଧାତା ସ୍ତ୍ରୀ ଗୋଟିକୁ ପୁରୁଷ ଗୋଟିଏ ନିର୍ମାଣ କରିଅଛି । ରାଜାଘରେ

ଥିଲେ ଯାହା ଭୋଗ କରନ୍ତି, ତୁମ୍ଭ ଘରେ ତାଠାରୁ ଅଧିକ ପାଇବ ।
ମାତ୍ର ରାଜା ମୋତେ ବରି ହୋଇଥିଲେ, କିନ୍ତୁ ମୋର ଦେହ ଛୁଇଁ
ନାହାନ୍ତି । କାରଣ ମୁଁ ଗୋଟିଏ ବ୍ରତ କରିଅଛି । ତାହା ପୂର୍ଣ୍ଣ ନ
କରି ଯେ ମୋତେ ଭୋଗ କରିବ, ସେ ତତ୍‌କ୍ଷଣେ ଭସ୍ମ ହୋଇଯିବ ।
ମହାଜନ କହିଲା, କଣ ବ୍ରତ କହ, ମୁଁ ତାହା ପୂର୍ଣ୍ଣ କରିଦେବି ।
କନ୍ୟା କହିଲା, ବ୍ରତର ବିଧାନ ସାତଦିନ । ଦିନକୁ ହଜାରେ ବ୍ରାହ୍ମଣ
ଆସିବେ । ମିଷ୍ଟାନ୍ନ ଭୋଜନ କରି ଜଣକେ ଦଶଟଙ୍କା ଲେଖାଏ
ଦକ୍ଷିଣା ନେବେ । ଆଉ ଲୁଗାଯୋଡ଼ ଓ ସୁନାମୁଦି ନେବେ । ପ୍ରଥମ
ଦିନ ଯେତେ ଆସିଥିବେ, ଦ୍ୱିତୀୟ ଦିନ ତାର ଦୁଇଗୁଣ । ଏପରି ବୃଦ୍ଧି
କ୍ରମରେ ସାତଟି ଦିନ ପୂର୍ଣ୍ଣ ହେବ । ତେବେ ମୋର ବ୍ରତ ଶେଷ
ହେବ । ରାଜକନ୍ୟାକୁ ଦେଖି ତ ମହାଜନ ମୋହିତ ହୋଇଥିଲା,
ଏଥିର ହିସାବ ନ ବୁଝି ସେହିପରି ଆରମ୍ଭ କଲା । ଆରଦିନଠାରୁ
ବ୍ରାହ୍ମଣମାନଙ୍କୁ ଡକାଇ ଭୋଜନ, ଟଙ୍କା, ବସ୍ତ୍ର, ଅଳଙ୍କାର ଉତ୍ତମରୂପେ
ଦେଲା । ବ୍ରାହ୍ମଣମାନେ ବିଚାର କଲେ, ଏ ଯକ୍ଷର ମୁହଁ ଚାହିଁଲେ ଭିକ୍ଷା
ମିଳୁ ନ ଥିଲା । ଏବେ କିପରି ଏତେ ଦେଉଅଛି ? ଏଥିରୁ ଜଣାଯାଏ
ଏହାର ଅଳ୍ପ ଦିନରେ ମୃତ୍ୟୁ ହେବ । ଏପରି ଭାବି ଯେ ଯାହା ଘରକୁ
ଗଲେ । ପୁଣି ଆରଦିନ ତାର ଦୁଇଗୁଣ ବ୍ରାହ୍ମଣ ଡକାଇ ସେପରି ସବୁ
ଦେଲା । କ୍ରମେ କ୍ରମେ ଛଅଦିନ ପୂର୍ଣ୍ଣ ହୋଇଗଲା । ସେତେବେଳକୁ
ମହାଜନର ସମ୍ପତ୍ତି ସରିଲାଣି । ଛଅ ଦିନଯାକରେ ଯେତେ ସରିଅଛି,
ସାତଦିନ ଏକାରେ ସେତିକି ହେବ । ମହାଜନ ଦେଖିଲାବେଳକୁ
ଘରେ ଆଉ ଗୋଟିଏ ଟଙ୍କା ନାହିଁ । ନ କରିବାକୁ ବି ଅଯୁକ୍ତ ନାହିଁ ।
ସାପ ଚୁଚୁନ୍ଦ୍ରା ନ୍ୟାୟ ହୋଇଅଛି । ଛାଡ଼ିଲେ ମରିବ; ନ ଛାଡ଼ିଲେ
ମରିବ । ଆଉ କଣ କରିବ ? ବଡ଼ କଷ୍ଟରେ ବନ୍ଧାଛନ୍ଦା ବିକାକିଣା
କରି ଯୋଗାଡ଼ ଆରମ୍ଭ କଲା । ବେଳ ଆସି ଦୁଇପହର ହେଲାଣି ।
ବ୍ରାହ୍ମଣ ଭୋଜନ ଗହଳରେ ଯିବା ଆସିବାକୁ ବାଟ ନାହିଁ । ମେଘ
ଗର୍ଜିଲେ ସୁଦ୍ଧା କାନକୁ ଶୁଭୁ ନାହିଁ । ଏଣେ ରାଜକନ୍ୟା ବିଚାର କଲା,
ସାତଦିନ ହେଲା କପଟରେ ଭଣ୍ଡିଦେଲି, ଆଜି କି ଉପାୟ କରିବି ?

ଏହା ଭାବି ଭାବି ଆଖିରୁ ଲୋତକ ଧାର ବହୁଅଛି । ଏ ସମୟରେ ମାଳଝୋକା ଫୁଲଧରି ଆସି ଦେଖିଲା ଯେ, ସେ କନ୍ୟା କାନ୍ଦୁଅଛି । ପଚାରିଲା, କାହିଁକି କାନ୍ଦୁଅଛୁ ? ତୋପାଇଁ ମହାଜନ କୋଟି କୋଟି ଟଙ୍କା ସାରୁଅଛି । ସେ କହିଲା, ଟଙ୍କା ସାରିଲେ କଣ ହେବ ? ଜାତିରେ ବେପାରୀ, ସେ ପୁଣି ମୋହର ଦେହ ଛୁଇଁବ । ସେଥିପାଇଁ ଦୁଃଖରେ କାନ୍ଦୁଅଛି । ଯେବେ ଏଠାରୁ ମୋତେ କେହି ନେଇ ଯାଆନ୍ତା, ତାକୁ ଲକ୍ଷେ ଟଙ୍କା ଦିଅନ୍ତି । ମାଳି କହିଲା, ଯଦି ମୋତେ ବଭ୍ ହେବୁ ତାହା ହେଲେ ମୁଁ ନେଇଯିବି । କନ୍ୟା ମନରେ ବିଚାର କଲା, ଏଠାରୁ ଗଲା ଉତ୍ତାରୁ ପଛକଥା ଦେଖିବ । ପ୍ରକାଶ୍ୟରେ କହିଲା, ତୋର କଥା କରିବି । ଏଠାରୁ ଚଞ୍ଚଳ ନେଇଯାଅ । ଏହା ଶୁଣି ମାଳଝୋକା ଗୁଆ ଗଛ ଯୋଡ଼େ ଆଣି ଗୋଟିଏ ସିଡ଼ି ବାନ୍ଧିଲା । କୋଠାର ପଛ ପଟରେ ପକାଇ ରାଜକନ୍ୟାକୁ ନେଇ ଚାଲିଗଲା । ସେ ସମୟକୁ ରାତ୍ର ଘଡ଼ିଏ ହୋଇଲାଣି । ଦୁହେଁ ମିଶି ଜଙ୍ଗଲ ରାସ୍ତାରେ ପଳାଇ ଗଲେ । ଏଣେ ମହାଜନ ସାତଦିନର ବିଧାନ ସାରି ବ୍ରାହ୍ମଣମାନଙ୍କୁ ମେଲାଣି ଦେଇ ଘରକୁ ଯାଇ ଦେଖିଲା ବେଳକୁ କନ୍ୟା ନାହିଁ । ପ୍ରତି ଘର ଖୋଜି ଦେଖିଲା ବେଳକୁ କୋଠା ବାହାରୁ ଗୋଟିଏ ସିଡ଼ି ଲାଗିଅଛି । ବିଚାର କଲା, ଏହି ସିଡ଼ିବାଟେ ପଳାଇଗଲା । ତାହା ଲାଗି ମୋର ସବୁ ସମ୍ପଦ ସରିଲା, କନ୍ୟାବେଳକୁ ତାକୁ ପାଇଲି ନାହିଁ । ଦାଣ୍ଡରେ ଲୋକେ କଣ କହିବେ ? ଏପରି ଭାବୁ ଭାବୁ ମହାଜନର ଏକବାରେ ମସ୍ତିଷ୍କ ବିଗିଡ଼ି ଗଲା । ସେ ମଧ୍ୟ ପାଗଳ ହୋଇ ଘରଦ୍ୱାର ଛାଡ଼ି ଚାଲିଗଲା । ତେଣେ ନଳିନୀପ୍ରଭା ଓ ମାଳଝୋକା ମହାଜନ ଭୟରେ ରାତି ରାତି ପଳାଇ ଗଲେ । ଯାଉଁ ଯାଉଁ ନଳିନୀ ତ ରାଜକନ୍ୟା, ସେ ଆଉ ଯାଇ ପାରିଲା ନାହିଁ । ମାଳି କହିଲା; ମହାଜନ ଦେଖିଲେ ମୁଣ୍ଡକାଟ କରିବ । ତୁ ଯାଇ ନ ପାରିଲେ କିପରି ହେବ ? ସେ କହିଲା, ମୁଣ୍ଡକାଟ କରୁ ନୋହିଲେ ଗଣ୍ଡିକାଟ କରୁ, ମୋର ଗୋଡ଼ ବାହାରୁ ନାହିଁ । ଏହା ଶୁଣି ମାଳି ତାକୁ ନିଜ କାନ୍ଧରେ ବସାଇ ଦଉଡ଼ିଲା । ବଣ ଜଙ୍ଗଲରେ ରାତିଯାକ ଯାଇ ଯାଇ ୧୮ କୋଶ ଦୂର ଲଙ୍ଘିଗଲେ । ସେ ସମୟକୁ ବେଳ ହୁଇ

ଘଡ ହେଲାଣି । ଜଙ୍ଗଲରେ ମଧ୍ୟ ମନୁଷ୍ୟମାନଙ୍କର ସଞ୍ଚାର ନାହିଁ । ଏପରି ନିର୍ଜନ ଅରଣ୍ୟ ଦେଖି ରାଜକନ୍ୟା ବିଚାରି କଲା, ଯଦି ଏହିଠାରେ କିଛି ଉପାୟ ନ କରିବି, ତେବେ ଜଙ୍ଗଲ ପାର ହୋଇ-ଗଲେ ଆଉ ଏହା ମୁଖରୁ ଯାଇ ପାରିବି ନାହିଁ । ଏହା ଭାବି ମାଳକୁ କହିଲା, ମୋତେ ଭାରି ଭୋକ ଲାଗିଲାଣି । କିଛି ନ ଖାଇଲେ ଆଉ ମୁଁ ଦଣ୍ଡେ ଜାଇ ପାରିବି ନାହିଁ । ମୋର ଗୋଡ଼ ବାହାରୁ ନାହିଁ । ଏହି ଗୁମ୍ଫା ଭିତରେ ମୁଁ ଲୁଚିକରି ବସିଥିବି । ତୁମ୍ଭେ ମୋର ଗୋଟିଏ ଅଳଙ୍କାର ନେଇଯାଅ । ପାଖ ପୁଞ୍ଜାରେ ଗ୍ରାମ ଥିବ, ସେଠାକୁ ଯାଇ ତାକୁ ବିକି କରିବ । ଦୁଇ ଚାରିଦିନ ସକାଶେ ସଉଦା ଘେନି ଆସିଥିବ । ଏହି ଗୁମ୍ଫାରେ ରୋଷେଇ କରି ଖାଇବା, ଦୁଇ ଚାରିଦିନ ଏଠାରେ ରହି ସୁସ୍ଥ ହେବା । ତା ପର ଅନ୍ୟ ଯାଗାକୁ ଯିବା । ମାଳ ସେ କଥାକୁ ତରକ ନ ପାଇ ଅଳଙ୍କାର ଗୋଟିଏ ନେଇ ଗ୍ରାମ ଖୋଜି ଖୋଜି ଗଲା । ତାକୁ ଅନ୍ତର ହେବାର ଦେଖି ରାଜକନ୍ୟା ନିଜ ଦେହରୁ ଅଳଙ୍କାରଯାକ ବାହାର କରି ଖାଉଡ଼ିଆମାନେ ରୋଷେଇ କରି ଫିଙ୍ଗିଥିବା ହାଣ୍ଡି ଗୋଟିଏ ଆଣି ସେ ଭିତରେ ରଖିଲା । ତା ଉପରେ ଶାଢ଼ୀ ଖଣ୍ଡିଏ ରଖିଲା । ଶାଢ଼ୀ ଉପରେ ଶିଆଳପତ୍ର ଦେଇ ତା ଉପରେ ପାଉଁଶ ପୋଡ଼ାଖୁଣ୍ଟା ଅଳଆ ଅସବର ପୂର୍ଣ୍ଣ କଲା । ଦେହଯାକ ମାଟି ଗୋବର କଳା ପାଉଁଶ ବୋଳି ହେଲା । ଗଛର ବକଳ ପିନ୍ଧି ବାଳ ମୁକୁଳା କଲା । ସେ ହାଣ୍ଡି ମୁଣ୍ଡରେ ମୁଣ୍ଡାଇ ବାଟେ ବାଟେ ଯାଉଅଛି । ତେଣୁ ମାଳ ଅଳଙ୍କାର ବିକି କରି ସଉଦାପତ୍ର ବୁଜୁଳି ବାନ୍ଧି ଆସୁଅଛି । ବାଟରେ ତାକୁ ଦେଖି ପଚାରିଲା, କି ଲୋ ପାଗଳି, ବାଟରେ ଗୋଟିଏ ମାଇପି ଲୋକ ଦେଖିଲୁ କି ? ସେ କାହିଁକି କଣ କହିବ, ଠିହି ଠିହି ହସିଲା । ମାଳ ଦେଖି ମନରେ ଭୟକରି ବାଟ ଭାଙ୍ଗି ଚାଲିଗଲା । ଯାଇ ଗୁମ୍ଫା ଭିତରେ ଦେଖିଲା ବେଳକୁ ରାଜକନ୍ୟା ନାହିଁ । ଜଙ୍ଗଲରେ କଣ ଖୋଜିବ ? ଏକବାରକେ ତାଟକା ହୋଇଗଲା । ସହଜେ ତ ରାତିଯାକ ମାଇପିଟିଏ ବହି ବହି କାନ୍ଧ ପ୍ରାସ ହୋଇଅଛି । କି କଲି

ବୋଲି ବଗ୍ରୁ ବଗ୍ରୁ ବୁଜୁଲ ବାଜୁଲି ଫିଙ୍ଗିଦେଇ ସେ ମଧ୍ୟ ଏକ ପାଗଳ ହୋଇ ଚାଲିଗଲା । ସେଥିପାଇଁ କହନ୍ତି—

ମନସା ଚିନ୍ତିତଂ କର୍ମଂ ଦୈବମନ୍ୟନ ଚିନ୍ତୟେତ୍ ।

ଯାହାକୁ ଯାହା ଯୋଗ ନ ଥିବ ଯେତେ ଯତ୍ନ କଲେ ସୁଦ୍ଧା ସେ ତା ପାଇବ ନାହିଁ । ଏହା ପରେ ରାଜକନ୍ୟା ପାଗଳୀ ହୋଇ ଯାଉଥିଲା । ବନଦେବତା ତାର ଏତେ କଷ୍ଟ ସହି ନ ପାରି ଦୟାକରି ତାକୁ ଦେଖା ଦେଲେ । ରାଜକନ୍ୟା ବନଦେବତାଙ୍କୁ ଦେଖି ତାଙ୍କ ପାଦରେ ପ୍ରଣାମ କରି କହିଲା, "ତୁମ୍ଭେ କିଏ, ମୁଁ ଜାଣେ ନାହିଁ । ତୁମ୍ଭ ପାଦରେ ଶରଣ ପଶିଲି । ମୁଁ ଅନାଥା ବାଳିକା । ମତେ ଏ ଘୋର ଅରଣ୍ୟ ମଧ୍ୟରୁ ରକ୍ଷା କର ।" ବନଦେବତା ତାର ବିକଳ ନ ସହି ତାକୁ କହିଲେ, ମନରୁ ଭୟ ଛାଡ଼ । ମୁଁ ବନଦେବତା, ତୋତେ ଦୟାକରି ଦେଖା ଦେଲି, ମୋଠାରୁ ଦୁଇଟି ମନ୍ତ୍ର ଶିକ୍ଷା କର । ଗୋଟିଏ ମନ୍ତ୍ର ଦଶଥର ଜପକଲେ ପୁରୁଷ ହୋଇଯିବୁ । ଆର ମନ୍ତ୍ରଟି ଜପ କଲେ ପୂର୍ବପରି ସ୍ତ୍ରୀ ହେଉଥିବୁ । ଏପରି କହି ତାକୁ ମନ୍ତ୍ର ଦେଇ ବନଦେବତା ଅନ୍ତର୍ଦ୍ଧାନ ହେଲେ । ରାଜକନ୍ୟା ମନ୍ତ୍ର ଜପ କରିବାରୁ ତତ୍‌କ୍ଷଣେ ପୁରୁଷ ହୋଇଗଲା । ତା ପରେ ସେହି ବାଣି ମୁଣ୍ଡିଆଇ ବାଟେ ବାଟେ ଯାଉଅଛି । ଦୈବରେ ସେ ସମୟକୁ ଚନ୍ଦନକୂଟ ଦେଶର ରଜା ମରି ଯାଇଥିଲେ । ତାଙ୍କର ପୁତ୍ର ନ ଥିବାରୁ ମନ୍ତ୍ରୀମାନେ ହାତୀ ଥୋରରେ ସୁନା କଳଶ ଦେଇ ବୁଲାଉଅଛନ୍ତି । ଯାହା ଉପରେ ଢାଳିବ ସେ ରଜା ହେବ । ସେ ହାତୀ ଯାଇ ଯାଇ ସେ ରାଜକନ୍ୟା ମୁଣ୍ଡରେ ସୁନା କଳଶ ଢାଳି ଦେଲା । ଏହା ଦେଖି ଚନ୍ଦନକୂଟ ପ୍ରଜାମାନେ ଆନନ୍ଦରେ ବାଜତୁରି ବଜାଇ ସେ କନ୍ୟାକୁ ହାତୀ ଉପରେ ବସାଇ ନେଇଗଲେ । ତା ପରେ ମନ୍ତ୍ରୀମାନେ ପୁରୋହିତଙ୍କୁ ଡକାଇ ବେଦ ବିଧାନରେ ଛନ୍ଦ ଟେକାଇ ଅଭିଷେକ କଲେ । ରାଜକନ୍ୟା ଚନ୍ଦନକୂଟରେ ରଜା ହୋଇ ପୁତ୍ର ପରି ପ୍ରଜାମାନଙ୍କୁ ପାଳନ କଲା । ଅନେକ ଦାନ ଧର୍ମ କଲା । କିଛିଦିନ ଯିବାରେ ଗୋଟିଏ ଧର୍ମଶାଳା ଚାରିଲକ୍ଷ ଟଙ୍କା ବ୍ୟୟ କରି ନିର୍ମାଣ କରାଇଲା । ସେ ଧର୍ମଶାଳାରେ କାନ୍ଥ

ପ୍ରତି ତିନିଶ ଜଣ ସକାଶେ ଅଲଗଛନ୍ନ ଖଞ୍ଜିଦେଲା । ତା ପର ଚିତ୍ରକାର-ମାନଙ୍କୁ ଡକାଇ କହିଲା, ଆଜି ସନ୍ଧ୍ୟା ସମୟରେ ଆମ୍ଭ ରାଜନବରରୁ ଗୋଟିଏ ସ୍ତ୍ରୀଲୋକ ଧର୍ମଶାଳାକୁ ଆମ୍ଭେ ପଠାଇ ଦେବୁ । ତାର ଅବିକଳ ପ୍ରତିମୂର୍ତ୍ତି ଯେ ଧର୍ମଶାଳାରେ ଲେଖିଦେବ, ସେ ଦଶହଜାର ଟଙ୍କା ପୁରସ୍କାର ପାଇବ । ଏହା ଶୁଣି ଅଧିରଥ ନାମରେ ଜଣେ ଚିତ୍ରଲେଖକ କହିଲା, ମୁଁ ଲେଖିଲେ ସାକ୍ଷାତ ସଜୀବ ପରି ଦେଖାଯିବ । ରାଜା ସନ୍ତୋଷ ହୋଇ କହିଲେ, ଅଜି ସନ୍ଧ୍ୟା ସମୟରେ ଧର୍ମଶାଳା ପାଟରେ ସାମାନପତ୍ର ଧରି ଉପସ୍ଥିତ ଥିବୁ । ଏହା କହି ରାଜା ଭିତରକୁ ଗଲେ । ସନ୍ଧ୍ୟା ହେବାରୁ ରଙ୍ଗ ପ୍ରତିରଙ୍ଗ ଲେଖଣୀ ଧରି ଚିତ୍ରଲେଖକ ପହଞ୍ଚିଗଲା । ଏଣେ ରାଜକନ୍ୟା ମନ୍ତ୍ରବଳରେ ନିଜରୂପ ଧରି ପୂର୍ବରୁ ଥିବା ଅଳଙ୍କାର ମଣ୍ଡିହୋଇ ସେହି ଶାଢ଼ୀ ପିନ୍ଧି ସୁଅବରରେ ଆସି ଧର୍ମଶାଳା ଦ୍ୱାରେ ପ୍ରବେଶ ହେଲା । ଚିତ୍ରକର ତାକୁ ଦେଖି ତାର ଅବିକଳ ମୂର୍ତ୍ତି କାନ୍ଥରେ ଲେଖିଦେଇ ଉପରେ ଦର୍ପଣ ଢାଙ୍କି ଦେଲା । ନିଜର ସଜୀବ ପ୍ରତିବିମ୍ବ ଦେଖି ଆନନ୍ଦରେ ରାଜକନ୍ୟା ଫେରିଯାଇ ମନ୍ତ୍ର ହେତୁରୁ ପୁଣି ମୂରୁଖ ହୋଇଗଲା । ଆରଦିନ ଚିତ୍ର-କାରକୁ ବିଧିମତ ସନ୍ତୋଷ କରି ଦଶ ଜଣ ସିପାହୀ ଡକାଇ ଆଜ୍ଞାଦେଲେ, ତୁମ୍ଭେମାନେ ଅନବରତ ଧର୍ମଶାଳା ଦ୍ୱାର ଜଗିଥିବ । ଯେବେ କୌଣସି ଲୋକ ଚିତ୍ରପଟ ଦେଖି କିଛି କହେ, ତାକୁ ତତ୍କ୍ଷଣେ ଧରି ଆମ୍ଭ ପାଶକୁ ଘେନି ଆସିବ । ଆଜ୍ଞା ପାଇ ସିପାହୀମାନେ ସେହିପରି ଜଗି ରହିଲେ । କେତେଦିନ ଉତ୍ତାରୁ ଦୈବରେ ସେହି ମାଳିଠୋକା ପାଗଳ ହୋଇ ବୁଲି ବୁଲି ସେହି ଧର୍ମଶାଳା ଦ୍ୱାରରେ ପହଞ୍ଚିଲା । ନଳିନୀ ପ୍ରଭାର ଚିତ୍ରପଟ ଦେଖି କହିଲା, ରାଣ୍ଡି ! ତତେ ବୋହି ବୋହି ଅଦ୍ୟାପି ମୋ କାନ୍ଧରୁଁ ପ୍ରାସ ଛଡ଼ି ନାହିଁ । ତୁ ଆସି ଏଠାରେ ରହିଅଛୁ । ଏହା ଶୁଣି ସିପାହୀ-ମାନେ ତାକୁ ବାନ୍ଧି ରାଜା ଛାମୁକୁ ନେଇଗଲେ । ତାକୁ ଦେଖି ରାଜା ପଚାରିଲେ, ତୋର କେଉଁ ଦେଶରେ ଘର ? ଚିତ୍ରପଟ ଦେଖି କଣ କହିଲୁ ? ଏହା ଶୁଣି ମାଳି ପୂର୍ବ କଥାଯାକ ସବୁ କହିଲା । ରାଜା ସବୁ ଶୁଣି ଖୋରାକ ଦେଇ ତାକୁ ବନ୍ଦିଶାଳାରେ ରଖାଇଲେ । ପୁଣି କିଛିଦିନ ପରେ ମହାଜନ ଜଗତଯାକ ବୁଲି ବୁଲି ଧେଡ଼ା ପରି ସେହି ଧର୍ମଶାଳା-

ଠାରେ ପହଞ୍ଚିଲା । କାନ୍ଥରେ ନଳମଣିପ୍ରଭାର ରୂପକୁ ଦେଖି ଦାଣ୍ଡରେ ଦାଣ୍ଡ କାମୁଡ଼ି ଆଖି ଭଙ୍ଗାଟି କହିଲା, ଏ ରାଣୀ ମୋର ଦୁଇଲକ୍ଷ ଟଙ୍କାର ସମ୍ପଦ ବୁଡ଼ାଇ ଲୁଚି ବାହାର ଆସିଲା । ଏହା ଶୁଣି ସିପାହୀମାନେ ବାନ୍ଧି ନେଇ ତାକୁ ରଜା ଛାମୁରେ ଦେଲେ । ରଜା ପଚାରିଲେ, ଛବି ଦେଖି କିଆଁ କହିଲୁ ? ମହାଜନ ପୂର୍ବ କଥାଯାକ କହିଲା । ରାଜା କୋପାନଳ ହୋଇ କହିଲେ, ଏ ଚଣ୍ଡାଳକୁ ନେଇ ବନ୍ଦଘରେ ରଖ । ଏହାକୁ ନିତି ବେଳେ ବେଳେ ଖାଇବାକୁ ଦେବ । ଆଉ ଦେଢ଼ ମହଣିଆ ଗାଣ୍ଡ–ଆରେ ଦିନଯାକ ମାଡ଼ି ବସିଥିବ । ଆଜ୍ଞା ପାଇ ସିପାହୀମାନେ ସେହିପରି ବନ୍ଦଘରେ ରଖିଲେ । ତହୁଁ କିଛିଦିନ ଯିବାରେ ରାଜପୁତ୍ର ବୁଲି ବୁଲି ସେହିଠାରେ ପ୍ରବେଶ ହେଲେ । ଜୀବନ ମାତ୍ର ଅଛି, ଦେହ ଯାକ ହାଡ଼ କଙ୍କାଳ ମାଳ ମାଳ, ଆଖି ନାକ ଖୋଳ ହୋଇଅଛି । ସତେ କି ଜନ୍ମଦିନଠାରୁ ଅନ୍ନ ଖାଇନାହିଁ । ମୁହଁରେ ହରେ ରାମ ରାମ କହି ଧର୍ମଶାଳା ପିଣ୍ଡାରେ ବସିଲେ । କାନ୍ଥରେ ନଳମଣିପ୍ରଭାର ପ୍ରତିବିମ୍ବ ଦେଖି ମନରେ କଣ ପାଇଁ 'ଆହା' ବୋଲି କହି ମୂର୍ଚ୍ଛା ହୋଇଗଲେ । ସିପାହୀ–ମାନେ ସିଞ୍ଚା ବିଞ୍ଚା କରି ଚେତା କରାଇଲେ । ତା ପରେ ଅଶ୍ୱାସନା କରି ରାଜାଙ୍କ ଛାମୁକୁ ନେଇଗଲେ । ରାଜା ଏହା ଶୁଣି ତାଙ୍କୁ ପଚାରିଲେ, ତୁମ୍ଭେ କିଏ ? ତୁମ୍ଭର ଘର କେଉଁ ଦେଶରେ ? କାହିଁକି ଅକାରଣରେ ଆହା କହି ମୂର୍ଚ୍ଛା ହୋଇଗଲ ? ସେ କହିଲେ, ମୋର ଦେଶ ନାହିଁ କି ଘର ନାହିଁ । ମୁଁ ଜଣେ ମହାପାପୀ, କର୍ମଦୋଷରୁ ବୁଲୁଅଛି । ବାଟ ଚାଲି ହାଲିଆ ହୋଇଥିବାରୁ ମୂର୍ଚ୍ଛା ହୋଇ ଗଲି । ଏହା ଶୁଣି ରାଜା କହିଲେ, ତୁମ୍ଭର ଗୁରୁଚରଣ, କପଟ ନ ରଖି ସତ୍ୟକଥା କହ । ତହୁଁ ସେ ବାଘଘର ଠାରୁ ଆଦି କରି ସବୁ କଥାଯାକ କହିଲେ । ନଳମଣିପ୍ରଭା ସେ କଥାଯାକ ସବୁ ସତ ଜାଣିଲା, କିନ୍ତୁ ରୂପ ଦେଖି ଚିନ୍ତା କରି କହିଲା, ତୁମ୍ଭେ ଦୁଇମାସ ମୋ ଘରେ ରହ । ତୁମ୍ଭେ ରାଜପୁତ୍ର, ମୁଁ ରାଜା ଦୁହେଁ ମିତ ବସିବା । ଦୁଇ ମାସ ଭିତରେ ମୁଁ ତୁମ୍ଭର କନ୍ୟାକୁ ଖୋଜାଇ ଆଣି ଦେବ । ଏହା କହି ତାକୁ କ୍ଷୌର ବାରି ସ୍ନାନ ପ୍ରକାର କରାଇ ଭୋଜନ କରିବାକୁ ଦୁହେଁ ବସିଗଲେ । ସୌରାଷ୍ଟ୍ର ରାଜକୁମାର ତ ନ ଖାଇ କ

ଯିଇ କଙ୍ଗାଳ ପରି ରହିଥିଲା, ରାଜବଧି ଭୋଜନ ମିଳିବାରୁ ଏକବାର ତତ୍ତ୍ୱାପାଏ ଭରି କରି ଖାଇଦେଲା । କଣ କରିବ ? ଆଉ ବସିବାଠାରୁ ଉଠି ପାରିଲା ନାହିଁ । ପୁଷ୍ପାଞ୍ଜ ହାତଧରି ଉଠାଇ ଦେଲା । ଏପରି କେତେ ଧନ ରଙ୍କାଳଆ ଛଡ଼ାଇ ଖାଇବାରୁ କ୍ରମେ କ୍ରମେ ଦେହ ବୃଦ୍ଧି ହୋଇ ଅଟିଲା । ଦୁଇମାସ ପୂର୍ଣ୍ଣରେ ପୂର୍ବ ପରି କନ୍ଦର୍ପ ତୁଲ୍ୟ ଦେହ ହୋଇଗଲା । ଦିନେ ସନ୍ଧ୍ୟା ସମୟରେ ନଳକାପ୍ରଭା ମନ୍ତ୍ରବଳରେ ନିଜ ରୂପ ଧରି ଅଳଙ୍କାର, ଶାଢ଼ୀ ପିନ୍ଧି ଅଲ୍ପ ମନ୍ଦହାସ କରି ରାଜପୁତ୍ର ନିକଟରେ ପହଞ୍ଚିଗଲା । ରାଜକୁମାର ନିଜର ଭାର୍ଯ୍ୟାକୁ ଦେଖି ଦରିଦ୍ର କୋଟିନିଧି ପାଇଲା ପରି ଆନନ୍ଦ ହୋଇ କୋଳାଗ୍ରତ କଲା । ତା ପରେ ଦୁହେଁ ଅନ୍ତଃପୁର ଶୟନ ମନ୍ଦିରରେ ପ୍ରବେଶ ହୋଇ ଯେତେ କଷ୍ଟ ଅନୁଭବ କରିଥିଲେ ତାହା କଥୋପକଥନ କରି ଦୁଃଖ ସହିତ ଆନନ୍ଦରେ ରାତ୍ରି ଯାପନ କଲେ । ଏଥିପାଇଁ କହନ୍ତି—

"ପୁନର୍ବିତ୍ତଂ ପୁନର୍ମିତ୍ରଂ ପୁନର୍ଦାରାଃ ପୁନର୍ମହୀ ।
ସର୍ବେତେ ପୁନଃପ୍ରାପ୍ୟନ୍ତେ ନ ଶରୀରଂ ପୁନଃପୁନଃ ।"

ଜୀଇଥିବା ଲୋକକୁ ପୁନର୍ପି ବିତ୍ତ, ମିତ୍ର, ଦାରା, ପୃଥିବୀ ସବୁ ମିଳେ; କେବଳ ଶରୀର ଗଲେ ଆଉ ମିଳେ ନାହିଁ । ଆରଦିନ ନଳକାପ୍ରଭା ସବୁ ପ୍ରଜାଙ୍କୁ ଡକାଇ ପୂର୍ବ ବୃତ୍ତାନ୍ତ ତାଙ୍କୁ କହି ନିଜ ପତିଙ୍କୁ ରାଜା କରାଇବାକୁ ପିତା ଏବଂ ଶ୍ୱଶୁରଙ୍କଠାକୁ ଦୂତ ପଠାଇଲେ । ସେମାନେ ଦୂତ ମୁଖରୁ ଶୁଭ ସମ୍ବାଦ ପାଇ ଚତୁରଙ୍ଗ ସୈନ୍ୟ ଘେନି ଚନ୍ଦ୍ରକୂଟ ଦେଶରେ ପ୍ରବେଶ ହେଲେ । ସୌରାଷ୍ଟ୍ର ଏବଂ ଧବଳପୁର ରାଜା, ପୁତ୍ରବଧୂ ଓ ଝିଅ ଜୁଆଁଙ୍କୁ ଦେଖି ଚିର ବିୟୋଗ ଦୁଃଖ ମନରୁ ଦୂର କଲେ । ତା ପରେ ପ୍ରଜାବର୍ଗ ସହିତ ନାନା ଉତ୍ସବ କରି ରାଜକୁମାର ମସ୍ତକରେ ପାଟ ବାନ୍ଧିଲେ । ଏଥିଉତ୍ତାରେ ସମସ୍ତେ ସଭାକରି ବନ୍ଦୀ ରହିଥିବା ମାଳି ଓ ମହାଜନର ଦଣ୍ଡବିଧି ଆଲୋଚନା କଲେ । ସେ ଦୁହିଁଙ୍କର ଦୋଷ ବୁଝି ସଭାସଦ ଲୋକମାନେ କହିଲେ, ମାଳି ଦୋଷୀ ହେଲେ ସୁଦ୍ଧା ଅନେକ ଉପକାର କରିଅଛି । ଏହାକୁ ଛାଡ଼ିଦିଅ । ଆଉ ଏ ମହାଜନ ବଡ଼ ଦୋଷୀ । ଏ ଯେତେକାଳ ବଞ୍ଚିଥିବ ସେ ପର୍ଯ୍ୟନ୍ତ ଏହାକୁ ଭିତରେ

ବନ୍ଦ ରଖି ନିତ୍ୟ ଲଙ୍କାମରିଚ ଧୂଆଁ ଦିଅ ହେଉଥିବ । ସେ ମହାକଳଙ୍କୀ, ମହାପାପୀ । ଅଦ୍ୟାପି ତା ଦେହରୁ ଜୀବ ଛିଣ୍ଡୁ ନାହିଁ । ଲଙ୍କାମରିଚ ଧୂଆଁ ଯୋଗେ ରଡ଼ କରି କଦର୍ଯ୍ୟ ବେଗ କରୁଅଛି । ଏହା ଶୁଣି ଅବୋଲକର ସାମନ୍ତଙ୍କର ଲୁଗା ପଟା ଭିଡ଼ି ଧରି ତାଙ୍କ ସଙ୍ଗେ ଗଲା । ଏହିଠାରେ ଅବୋଲକର କାହାଣୀର ଷଷ୍ଠ ତରଙ୍ଗ ଶେଷ ହେଲା ।



# ପଥର ସଭା କଥା

ଆରଦିନ ସକାଳୁ ଉଠି ସାମନ୍ତ ଓ ଅବୋଲକରା ଲୁଗା କପଡ଼ା ଭାର ଧରି ଯାତ୍ରା କରି ବାହାରିଲେ । ଯାଉଁ ଯାଉଁ କଣସୁଗିରି ନାମକ ଦେଶରେ ପହଞ୍ଚିଲେ । ସେଠାରେ ବେଳ ଉଚ୍ଚୁର ହୋଇଗଲା, ବଡ଼ ଖରା କାଟିଲା, ଆଉ ଯାଇ ପାରିଲେ ନାହିଁ । ସାମନ୍ତ ବୋଇଲେ, ଅବୋଲକରା ଏହି ପୋଖରୀକୂଳେ ରହିବା । ଏହା କହି ଗୋଟିଏ ବଟ ଗଛମୂଳେ ରହିଲେ । ସେଠାରୁ ପୋଖରୀ ନିକଟ । ସେ ପୋଖରୀର ପାଣି ବଡ଼ ନିର୍ମଳ, ଅନେକ ପଦ୍ମଫୁଲ ଫୁଟିଅଛି, ତାର ନିକଟରେ ଗୋଟିଏ ଶିବମନ୍ଦିର ଅଛି । ସେଠାରେ ରହି ସାମନ୍ତ ଅବୋଲକରାକୁ କହିଲେ, ମୁଁ ଏଠାରେ ସ୍ନାନ ସାରି ନିତ୍ୟକର୍ମ କରୁଅଛି । ତୁ ଏହି ଆଗେ ଦିଶୁଥିବା ବଜାରକୁ ଯା, ଚଞ୍ଚଳ ସଉଦା ପତ୍ର ନେଇ ଆସିବୁ । ଏହା କହି ତାକୁ ଗୋଟିଏ ଟଙ୍କା ଦେଇ ସ୍ନାନ କରିବାକୁ ଗଲେ । ଅବୋଲକରା ଟଙ୍କାଟି ଧରି ବଜାରକୁ ଗଲା । ସଉଦାପତ୍ର ନ ଆଣି ଏଣେ ତେଣେ ବୁଲିବାକୁ ଦେଖିଲା । ଦେଖୁ ଦେଖୁ ଗୋଟିଏ ଆଶ୍ଚର୍ଯ୍ୟ କଥା ଦେଖିଲା । ସେଠାରେ ଗୋଟିଏ ଉତ୍ତମ ସଭାଗୃହ ଅଛି । ସେ ସଭାରେ ରଜା, ପାତ୍ର, ମନ୍ତ୍ରୀ, ପାଇକ, ରାଉତ, କଟୁଆଳ ସମସ୍ତେ ପଥର ପାଲଟି ବସିଛନ୍ତି । ଏହା ଦେଖି ଅବୋଲକରା ମନେ ମନେ ଆଶ୍ଚର୍ଯ୍ୟ ହୋଇ ସେଠାରେ ସମସ୍ତ ଲୋକଙ୍କୁ ପଚାରିଲା—ଏ ସଭାରେ କାହିଁକି ଏତେ ଲୋକ ପଥର ପାଲଟି ବସି ଅଛନ୍ତି ? ସେମାନେ କହିଲେ ଆମେ ଏଥିର କାରଣ କିଛି ଜାଣୁ ନାହୁଁ । କେତେକାଳରୁ ଏମିତି ବସିଅଛନ୍ତି, ଏଥିର କାରଣ ଆମେ କହି ପାରିବୁ ନାହିଁ । ଏହା ଶୁଣି ଅବୋଲକରା ଆଉ ସଉଦା କଣ କରିବ, ତାର ମନ କଣ ହୋଇଗଲା । ମୁହଁଟି ଶୁଖେଇ ଦେଇ ଗୋଟିଏ ଗୋଟିଏ ବାହୁଡ଼ିଲା । ସେତେବେଳକୁ ସାମନ୍ତ ସ୍ନାନ ନିତ୍ୟକର୍ମ ସାରି ବସିଲେଣି । ଦେଖିଲେ ଯେ ଅବୋଲକରା ସଉଦା ପତ୍ର ନ ଆଣି ଫେରି ଆସୁଅଛି । ତାକୁ ପଚାରିଲେ, କିରେ ସଉଦାପତ୍ର କାହିଁକି ଆଣିଲୁ ନାହିଁ ? ଅବୋଲକରା କହିଲା, ସଉଦା କଣ ଆଣିବି ? ମୁଁ

ଯାହା ଦେଖି ଅସିଛ ଆଗ କହ; ନୋହିଲେ ତମ ଲୁଗାପଟା ରଖ ମୋ ଶିକା ବାହୁଙ୍ଗି ନେଇ ମୁଁ ଗଲି । ସାଆନ୍ତ କହିଲେ, ଅରେ ଅବୋଲକରା, ତୁ ଏପରି ଆଉ ହଟହଟା କର ନା। ଅକା ଅଜ ପ୍ରେପେଇ କରିବା ନାହିଁ, ବହୁତ ହେଲାଣି । ଫୁଲ ଫିଟା, ଛତୁଆ କାଢ଼ି ଜଳଖିଆ କରିବା । ଟିକିଏ ଦେହ ସୁସ୍ଥ ହେଲେ ତୁ ଯାହା ଦେଖି ଆସିଛୁ ତୋତେ ତହିଁର କାରଣ କହିବା । ଏହା କହି ଜଳଖିଆ କଲେ । ଅବୋଲକରା କହିଲା, ଏ ନଗରରେ ଗୋଟିଏ ସଭା ଅଛି, ତହିଁର ରଜା, ମନ୍ତ୍ରୀ ଆଦି ଅନେକ ଲୋକ କାହିଁକି ପଥର ପାଲଟି ବସିଅଛନ୍ତି ? ଏକଥା ବୁଝାଇ ମୋତେ କହିଦିଅ । ସାଆନ୍ତ କହିଲେ—ପକା କମ୍ବଳ ପୋଡ ଛତା, ବସ ଅବୋଲକରା କହିବା କଥା ।

ଦକ୍ଷିଣ ଦେଶରେ ସିନ୍ଧୁ ନାମକ ଏକ ରାଜ୍ୟ ଥିଲା । ସେଠାରେ ବୀରବାହୁ ବୋଲି ଜଣେ ରାଜା ଥିଲେ ତାଙ୍କର ଦୁଇଟି ରାଣୀ ଥାନ୍ତି । ବଡ଼ ରାଣୀର ନାମ ପ୍ରେମଶୀଳା, ସାନ ରାଣୀର ନାମ କନକମଞ୍ଜରୀ । ସାନ ରାଣୀଟି ବଡ଼ ସୁନ୍ଦରୀ । ତାଠାରେ ରଜା ବଡ଼ ସ୍ନେହ କରୁଥାନ୍ତି । ବଡ଼ ରାଣୀଟିକୁ ଦେଖି ପାରନ୍ତି ନାହିଁ । କେତେଦିନ ଗଲା ପରେ ଦୈବଯୋଗେ ବଡ଼ ରାଣୀର ଗୋଟିଏ ପୁଅ ଜନ୍ମ ହେଲା । ବଡ଼ ରାଣୀର ପୁଅ ହେବା ଦେଖି ସାନରାଣୀ ମନେ ମନେ ଚିନ୍ତାକରି ବସିଲେ, ତାର ତ ପୁଅ ହେଲାଣି ସେ ରାଜ୍ୟ ପାଇବ, ରଜା ଭଲ ମନ୍ଦହେଲେ ମତେ ନିଶ୍ଚେ ରାଜ୍ୟରୁ ତଡ଼ିଦେବ । ମୁଁ ଏବେ କି ଉପାୟ କରିବି ? ବଡ଼ ପୁରୁଷେ କହିଛନ୍ତି, "ବେଲ ଥାଉ ବନ୍ଧ ବନ୍ଧାଇ ରଖ । ହେଲାକଲେ ପଛେ ନାହିଁଟି ମୁଁ ।" ଏ କଥା ମନେ ବିଚାରି କାହାକୁ କିଛି ନ କହି ଗୋଟିଏ ବଡ଼ ବାକ୍ସ କାଠରେ ତିଆରି କଲା । ବଡ଼ ରାଣୀ ନିଦରେ ଶୋଇଥିବା ବେଳେ ତାକୁ ସେ ବାକ୍ସ ଭିତରେ ପୂରାଇ ଦେଇ, ସେ ଜନ୍ମ କରିଥିବା ପିଲାଟିକୁ ତା କୋଳରେ ଦେଇ ବାକ୍ସଟି ମୁଦି ଦେଲା । ତା ପରେ ନିଜର ଦାସୀମାନଙ୍କୁ ଡାକି କହିଲା, ରାତି ରାତି ଏ ବାକ୍ସଟା ନେଇ କେହି ଦେଖିବେ ନାହିଁ ନଦୀରେ ଭସାଇ ଦେଇ ଆସ । ଦାସୀମାନେ ସେହିକ୍ଷଣି ବାକ୍ସଟି ନେଇ ନଦୀରେ ଭସାଇ ଦେଇ ଅସିଲେ । ମା ପିଲା-

ଯୋଡ଼ଙ୍କ ଭିତରେ ଥାନ୍ତି, ବାକ୍ସଟି ନଈରେ ଭାସି ଭାସି ସକାଳକୁ ଏହି କଣସ୍ୱଗିର ଦେଶ ନିକଟରେ ଲାଗିଲା । ସେ ସମୟକୁ ଏ ଦେଶରେ ଜଣେ କେଉଟ ରଜା ହୋଇଥିଲା । ତାକୁ ତାର ସାନଭାଇ ରାଜ୍ୟରୁ ତଡ଼ଦେଇ ବଳବନ୍ତ ପଣେ ଆପେ ଗାଦି ମାଡ ବସିଲା । ବଡ଼ଭାଇ ରାଜ୍ୟଭ୍ରଷ୍ଟ ହୋଇ ଗୋଟିଏ ପଲ୍ଲୀ ଗ୍ରାମରେ ପିଲା କୁଟୁମ୍ବ ଘେନି ରହି-ଥାଏ । ସେ ତ ଜାତିରେ କେଉଟ, ଭାଇ ତ ରାଜ୍ୟ ଛଡ଼ାଇ ନେଲା । ଗରିବ ହୋଇ ନିତ ମୀନ ମାରି କୁଟୁମ୍ବ ପୋଷୁଥାଏ । ଦଇବରେ ସେହି-ଦିନ ସକାଳୁ ଉଠି ଜାଲ ଧରି ନଦୀକୂଳକୁ ଗଲା ବେଳକୁ ଦେଖିଲା ଯେ, ବାକ୍ସଟି କୂଳରେ ଲାଗିଛି । ଏଥିରେ କି ପଦାର୍ଥ ଅଛି ବୋଲି ଧାଇଁ ଯାଇ ଫିଟାଇ ଦେଖିଲା ବେଳକୁ ବାକ୍ସ ଭିତରେ ଗୋଟିଏ ଦିବ୍ୟ କନ୍ୟା ଅଛି । କୋଡ଼ରେ ଦୁଇ ଦିନର ପିଲାଟି ଶୋଇଅଛି । କେଉଟ ରଜା ଆଶ୍ଚର୍ଯ୍ୟ ହୋଇ ସେ କନ୍ୟାକୁ ପଚାରିଲା, ତୁମ୍ଭେ କିଏ ? ତୁମ୍ଭ ଘର କେଉଁଠି ? ଦୁଇଦିନର ପିଲାଟିଏ ଧରି ବାକ୍ସରେ ମୁଦା ହୋଇ କପରି ଭାସି ଆସିଲ ? ସେ କନ୍ୟା ବିକଳରେ କାନ୍ଦି କାନ୍ଦି କହିଲା, ମୁଁ ସିନ୍ଧୁ-ଦେଶ ରାଜା ବୀରବାହୁଙ୍କ ପାଟରାଣୀ । ମୋର ଏ ପୁଅଟି ଜନ୍ମ ହେବାରୁ ସାନ ସଉତୁଣୀ ହିଂସାରେ ମୁଁ ଶୋଇଥିବା ବେଳେ ମୋତେ ଆଉ ମୋର ଏ ପୁଅଟିକି ବାକ୍ସରେ ମୁଦିକରି ନଈରେ ଭସାଇ ଦେଲା । ଆୟୁଷ ଥିବାରୁ ନ ମରି ମା ପିଲା ଦୁହେଁ ବଞ୍ଚିଅଛୁ । ତୁମ୍ଭେ କିଏ ? ମୋତେ ମରଣସଙ୍କଟରୁ ରକ୍ଷା କରି ଆଜଠାରୁ ମୋର ଧର୍ମ ପିତା ହେଲ । କେଉଟ ରଜା କହିଲା, 'ମା କିଛି ଭୟ କର ନାହିଁ । ତୋ ଦୁଃଖରୁ ମୋ ଦୁଃଖ ବଳେ । ମୁଁ ଏହି ରାଜ୍ୟର ରାଜା ହୋଇଥିଲି । ମୋର ସାନଭାଇ ମୋତେ ବଳେ ମାରି ତଡ଼ଦେଇ ଆପେ ରାଜ୍ୟ ଭୋଗ କରୁଅଛି । ମୁଁ ଭୟରେ ରାଜ୍ୟ ଧନ ଛାଡ଼ି ଗୋଟିଏ ପଲ୍ଲୀ ଗାଁରେ ରହି ଦୁଃଖ ସୁଖରେ ବଞ୍ଚିଅଛି । ତୁ ଏବେ ଆସି ମୋ ଘରେ ନିଶ୍ଚିନ୍ତରେ ରହ । ମୋର ପୁଅ ନାହିଁ । ତୋର ଏ ପୁଅଟିକି ମୁଁ ପୁଅ ପରି ପାଳିବି । ଝିଅପରି ମୋ ଘରେ ରହିବୁ ।' ଏହା ଶୁଣି ରାଣୀ ପ୍ରେମଶୀଳା କର୍ମକୁ ଆଦରି ପୁଅଟିକି ଧରି କେଉଟ ରଜା ସଙ୍ଗେ ଯାଇ ତା ଘରେ ରହିଲା । କେଉଟ ଓ

କେଉଁଠାରେ ଲୁଚି ଏ ମା ପିଲାପୁଅଙ୍କୁ ବଡ଼ ଯାଗ୍ରତରେ ପାଳି ରଖିଲେ । କେତେ ଦିନ ଗଲା ପରେ ଏଙ୍ଖୋଇଣୀ କରି ସେ ପିଲାଟିର "ପୁରୁଜିତ" ବୋଲି ନାମ ଦେଲେ । କ୍ରମେ କ୍ରମେ ପୁରୁଜିତଙ୍କୁ ସାତବର୍ଷ ହେବାରୁ ଗୃହଶାଳାରେ ପାଠ ପଢ଼ିଲା । ସେ ତ ରାଜପୁତ୍ର, ଅଳ୍ପଦିନରେ ପଢ଼ି ସବୁ ପାଠଯାକ ଶେଷ କରିଦେଲା । କ୍ଷତ୍ରିୟ ଗୁଣରେ କାଣ୍ଡକର୍ଷଣ, ମାଲବିଦ୍ୟା, ଧନୁଶର, ଖଣ୍ଡା, ଶାବେଳ, ଇତ୍ୟାଦି ବିଦ୍ୟା ସାଧି ବଡ଼ ବିଚକ୍ଷଣ ହେଲା । ଆଉ ସୁନ୍ଦରପଣରେ କନ୍ଦର୍ପ ପରି ଦିଶୁଥାଏ । ବଳବନ୍ତ ପଣେ କାହାକୁ ନ ମାନି ବଡ଼ ଦୁଃଖଆଚରଣ କରୁଥାଏ । ତାର ଦୁଷ୍ଟପଣ ଦେଖି ସେ ଦେଶର ଲୋକେ ଭୟକରି ରାଜା ଆଗରେ କହିଲେ । ଏ କଥା ଶୁଣି ରାଜା ମନେ ମନେ ବିଚାରିଲେ, ମୁଁ ବଡ଼ ଭାଇକୁ ତଡ଼ିଦେଇ ରାଜା ହୋଇଅଛି । ଏବେ ବଡ଼ଭାଇ କେଉଁଆଡ଼ୁ ଗୋଟାଏ ଛୋକରା ଯୋଗ୍ୟ ଆଣି ତାକୁ ପୋଷି ପାଳି ନାନା ଅସ୍ତ୍ର ଶସ୍ତ୍ର ବିଦ୍ୟା ଶିଖେଇଲାଣି । କଷ୍ଟେ ମୋତେ ମାରି ରାଜ୍ୟ ନେଇଯିବ । ମୁଁ ଯଦି ଏହାକୁ ଏହି ପିଲାଦିନୁ କୁଠ କରି ନ ମାରିବି, ତେବେ ବଡ଼ ହେଲେ ଆଉ ପାରିବି ନାହିଁ । ଏ କଷ୍ଟେ ମୋତେ ମାରି ରାଜ୍ୟ ନେବ । ଏମନ୍ତ ବିଚାରି କରି ବଡ଼ ଭାଇଠାକୁ ଗୋଟାଏ ଆଜ୍ଞାପତ୍ର ଲେଖିଲା । ତୁମେ ଯେଉଁ ପିଲାଟିକୁ ପାଳିଅଛ, ତାକୁ ଅମ୍ଭେ ଦେଖିବୁ । ତା ମା ସହିତ ଶୀଘ୍ର ଆମ୍ଭଠାକୁ ପଠାଇ ଦିଅ । ନୋହିଲେ ତୁମ୍ଭର ଆଉ ସେ ପିଲାର ମୁଣ୍ଡ କାଟିକରି ଗଣ୍ଡିକି ଶୂଳିଦେବୁ । ଏହା ଶୁଣି ବୁଢ଼ା କେଉଁଠ ରାଜା ପ୍ରେମଶୀଳାକୁ କହିଲା ମା, 'ଏଣିକି ତୋ କପାଳରେ ଯାହା ଅଛି ତାହା ଭୁଞ୍ଜିବୁ । ମୁଁ ଆଉ ତୋତେ ରଖି ପାରିବି ନାହିଁ । ମୋର ସାନଭାଇ ଏ ରାଜ୍ୟରେ ରାଜା ହୋଇଅଛି । ତୋତେ ଏବଂ ତୋ ପୁଅକୁ ଦେଖିବାକୁ ନେବ ବୋଲି ଆଜ୍ଞାପତ୍ର ଦେଇଛି । ତୁମ୍ଭେ ଅବଶ୍ୟ ଯିବ; ମାତ୍ର ସେ ବଡ଼ ଦୁଷ୍ଟ ଲୋକ । ସବୁ କଥାକୁ ଆଲୋଚନା କରି ଦେଖି ବୁଝି ଚାଲିବ ।' ଏହା ଶୁଣି ପ୍ରେମଶୀଳା ବହୁତ କାନ୍ଦିଲା । ମାଆକୁ କାନ୍ଦିବାର ଦେଖି ପୁରୁଜିତ କହିଲା, 'ମା କାହିଁକି କାନ୍ଦୁଅଛୁ; କିଛି ଭୟ ନାହିଁ । ରାଜା ଯେବେ ଡକାଇଛନ୍ତି, ଚାଲ ଏହିକ୍ଷଣି ଯିବା । ଏମନ୍ତ କହି

ମା'କୁ ସଙ୍ଗେ ଧରି ରଜା ପାଖକୁ ଗଲା । ରଜା ତାଙ୍କୁ ଦେଖି ବହୁତ ଆଦର କରି ନିଜ ଉଆସ ଭିତରେ ରଖିଲେ । ଦୁଇ ଗୃରି ଦିନ ଉହାଁ ପରେ ପୁରୁକିତ କାହା କଥା ନ ମାନି ଘୋଡ଼ାରେ ବସେ, ହାତୀରେ ବସେ, କାହାକୁ ମ'ରେ, କାହାକୁ ପିଟେ, ଏପରି ନାନା ଉପଦ୍ରବ କଲା । ରଜା ତାର ଦୁଷ୍ଟପଣ ଦେଖି ମନ୍ତ୍ରୀମାନଙ୍କୁ ଧରି ବିଗୃର କଲେ,ଏ ଦୁଷ୍ଟକୁ ଯଦି ଏହିଦିନୁ ନ ମାରିବା, ଏ ବଢ଼ିଲେ ଆମ୍ଭ ସମସ୍ତଙ୍କୁ ମାରି ରାଜ୍ୟ ଭୋଗ କରିବ । ଏହାକୁ କିପରି ମାରିବା, ଯେପରି ଲୋକନିନ୍ଦା ହେବ ନାହିଁ—ଏ କଥା ସମସ୍ତେ ବିଗୃର କର । ମନ୍ତ୍ରୀମାନେ କହିଲେ, ଯାହାକୁ ଭୁମ୍ଭ ବଡ଼ଭାଇ ପୋଷି ପାଳି ରଖିଥିଲେ । ତୁମ୍ଭେ ସ୍ୱହସ୍ତରେ ମାଇଲେ କିମ୍ବା ଭୁମ୍ଭ କର୍ମଗୃରୀଙ୍କଦ୍ୱାରା ମରାଇଲେ ଲୋକେ ବହୁତ ନିନ୍ଦା କରିବେ । ଉପାୟ କରି ପରହସ୍ତରେ ମରାଇବା ଉଚିତ । ରଜା ବୋଇଲେ, ତେବେ କି ଉପାୟ କଲେ ମାଇଲେ ଲୋକେ ନିନ୍ଦା ନ କରିବେ, ତାହା କହ । ମନ୍ତ୍ରୀମାନେ କହିଲେ, ଗୋଟିଏ ସହଜ ଉପାୟ ଅଛି, ତାହା ଶୁଣ ।

"ବର୍ଦ୍ଧମାନ ଦେଶ ରାଜାଙ୍କର ଗୋଟିଏ କନ୍ୟା ଅଛି । ତାର ନାମ ଉନ୍ମାଦିନୀ । ସେ କନ୍ୟା ବଡ଼ ସୁନ୍ଦରୀ ସର୍ବସୁଲକ୍ଷଣୀ । ସେ ଏହି କଥା ନିଶ୍ଚୟ କରିଅଛି ଯେ ହିଣିବ ରାକ୍ଷସୀକି ମାରି ତାର ମୁଣ୍ଡ ଯେ ଆଣିଦେବ, ସେ ତାକୁ ବିଭା ହେବ । ଏ କଥା ଶୁଣି କନ୍ୟା ଲୋଭରେ ଅନେକ ରାଜପୁତ୍ର ହିଣିବ ରାକ୍ଷସୀକି ମାରିବାକୁ ଯାଇ ଆଉ ଫେରୁ ନାହାନ୍ତି । ସେ ରାକ୍ଷସୀ ନିର୍ଜନ ମରୁଭୂମିରେ ଅଛି । ତା ଆଗକୁ ମନୁଷ୍ୟ ଗଲାମାତ୍ରେ ପଥର ହୋଇ ସେହିଠାରେ ରହୁଛନ୍ତି । ଏବେ ଆପଣ କୌଶଳରେ ପୁରୁକିତକୁ ସେହିଠାକୁ ପଠାଇ ଦିଅନ୍ତୁ, ଏକବାରେ କଳଙ୍କ ଯିବ ।" ଏହା ଶୁଣି ରାଜା ପୁରୁକିତକୁ ବିଶ୍ୱାସରେ ଏକାନ୍ତ ସ୍ଥାନକୁ ଡାକି କହିଲେ, "ବାବୁ, ତୋତେ ଆମ୍ଭ ବଡ଼ଭାଇ ପିଲାଦିନୁ ପୋଷି ପାଳି ରଖିଥିଲେ । ତେଣୁ ତୁ ଆମ୍ଭର ଧର୍ମରେ ପୁତ୍ର ହେଲୁ । ଆମ୍ଭର ଗୋଟିଏ ଗୁରୁତର କାର୍ଯ୍ୟ ପଡ଼ିଅଛି । ତାହା କେହି କରି ପାରୁ ନାହାନ୍ତି । ତୁ ଯେବେ ସେ କାର୍ଯ୍ୟଟି କରିଦେଇ ପାରିବୁ ତୋତେ ଗାଁ ଗଣ୍ଡା ଦେଇ ନିଶ୍ଚିନ୍ତରେ ରଖାଇ ଦେବି ।" ପୁରୁକିତ କହିଲା,

"ଆପଣ ମୋର ଧର୍ମର ପିତା । ଯାହା ଆଜ୍ଞା ଦେବେ ଜୀବନ ଯାଉ ପଛେ ତାହା କଷ୍ଟେ କରିବ । ଏ ମୋର ନିବାର ସତ୍ୟ । କି କାର୍ଯ୍ୟ ପଡ଼ିଅଛି, ତାହା ଚଞ୍ଚଳ କହନ୍ତୁ ।" ରଜା କହିଲେ, "ବର୍ଦ୍ଧମାନ ଦେଶ ରଜାଙ୍କର ଗୋଟିଏ ଅତି ସୁନ୍ଦରୀ କନ୍ୟା ଅଛି । ସେ କନ୍ୟା ଏମନ୍ତ ପଣ କରିଅଛି ଯେ, ଯେଉଁ ଲୋକ ନିଶିଗ୍ ରାକ୍ଷସୀକୁ ମାରି ତାର ମୁଣ୍ଡ ଆଣି ଦେବ। ସେ କନ୍ୟା ତାକୁ ବିଭାହେବ । ନିଶିଗ୍ ରାକ୍ଷସୀ କେଉଁଠାରେ ଅଛି, ତାହା କେହି ଦେଖିପାରୁ ନାହାନ୍ତି । ତୁ ଯେବେ ତାକୁ ମାରି ମୁଣ୍ଡ ଆଣି ଦେଇ ପାରିବୁ, ତେବେ ମୋର ବଡ଼ ଉପକାର କରିବୁ । ତୋ ବଳରେ ମୁଁ ସେ କନ୍ୟାକୁ ବିଭା ହେବି ।" ପୁରୁକତ ବୋଇଲା, "ଏହି ଛାର କଥା ପାଇଁ ଏତେ ଚିନ୍ତା କରୁଛ ? ମୁଁ ଏହିକ୍ଷଣି ଯାଉଅଛି । ସେ ରାକ୍ଷସୀ କେଉଁଠାରେ ଥିବ, ତାକୁ ଖୋଜି ତାର ମୁଣ୍ଡ କଷ୍ଟେ ଆଣି ଦେବ ।" ଏହା କହି ରଜାଙ୍କୁ ନମସ୍କାର କରି ତାର ନିଜ ମା ପାଖକୁ ଯାଇ ମା ଆଗେ ଏ କଥା ସବୁ କହି କାଣ୍ଡ, ଖଣ୍ଡା, ଧନୁ ଆଦି ଅନେକ ଅସ୍ତ୍ର ଶସ୍ତ୍ର ଧରି ବୀରବେଶ ହୋଇ ଗୋଟିଏ ଘୋଡ଼ା ଉପରେ ବସି ଉତ୍ତର ମୁଖରେ ଚାଲିଗଲା । ଯାଉଁ ଯାଉଁ ବାଟରେ ଯାହାକୁ ଦେଖେ ତାକୁ ପଚାରେ, ନିଶିଗ୍ ରାକ୍ଷସୀର ଘର କେଉଁଠି ଅଛି କିଏ ଜାଣିଥିଲେ ମୋତେ କହିଦିଅ । ଏପରି ଯାହାକୁ ପଚାରେ ସେ ବୋଲେ, "ନିଶିଗ୍ ରାକ୍ଷସୀ କିଏ ? ତା ଘର କେଉଁଠି ତା ଆମେ ଜାଣି ନାହୁଁ ।" ଏମନ୍ତ ପଚାରି ପଚାରି ଅନେକ ଦେଶ, ଗ୍ରାମ, ନଗର, ପାଟଣା ବୁଲିଲା । କେଉଁଠି ହେଲେ ରାକ୍ଷସୀର ଖବର କିଛି ପାଇଲା ନାହିଁ । ଏଣେ ତ ରଜା ଆଗରେ ପ୍ରତିଜ୍ଞା କରିଯାଇଛି । କଣ କରିବ ? ମନରେ ବହୁତ ଚିନ୍ତାକରି ଘୋର ବନରେ ପଶିଗଲା । ସେ ବନରେ ଜନସଞ୍ଚାର ନାହିଁ। ଅଗ୍ନା ଅଗ୍ନି ବନସ୍ତ, ବାଘ, ଭାଲୁ ପଲ ପଲ ବୁଲୁଛନ୍ତି । ପୁରୁକତ ତାଙ୍କୁ ଦେଖି କିଛି ଭୟ ନ କରି ଯାଉଥାଏ । ଯାଉଁ ଯାଉଁ ଆଗରେ ଜଣେ ସିଦ୍ଧ ପୁରୁଷଙ୍କୁ ଦେଖିଲା । ତାଙ୍କ ପାଦତଳେ ଦଣ୍ଡପ୍ରଣାମ କରି ହାତ ଯୋଡ଼ି ଠିଆହେଲା । ସେ ସିଦ୍ଧପୁରୁଷ ଆଶୀର୍ବାଦ କରି ବୋଇଲେ—ବାବୁ, ଷଦିଓ୍ୱ ବାଳକ ପରି ଦିଶୁଅଛୁ । ତୋ ସୁନ୍ଦର ରୂପ

ଦେଖି ମୁଁ ବଡ଼ ଆନନ୍ଦ ହେଲି । ତୁ ଏ ବାଳକ ବୟସରେ ଏକାହୋଇ ଘର ଦ୍ୱାର ଛଡ଼ ଆସି କାହିଁକି ଏ ନିର୍ଜନ ବନରେ ବୁଲୁଅଛୁ ? ପୁରୁଜିତ କହିଲା, ମୁଁ ନିଶିଗ୍ର ରାକ୍ଷସୀକି ଖୋଜୁଛି । ତାକୁ ଦେଖିଲେ ମାରି ତାର ମୁଣ୍ଡ ନେବ । ଏଥିପାଇଁ ଆମ ଦେଶର ରଜା ମୋତେ ପଠାଇ ଅଛନ୍ତି । ତୁମେ ଯେବେ ଜାଣ ସେ ରାକ୍ଷସୀ କେଉଁଠାରେ ଅଛି, ଦୟାକରି କହି ଦିଅ । ଏହା ଶୁଣି ସେ ପୁରୁଷ କହିଲେ ନିଶିଗ୍ର ରାକ୍ଷସୀ କେଉଁଠାରେ ଅଛି ମୁଁ ଜାଣେ ନାହିଁ; ମାତ୍ର ଏଠାରୁ ବାରକୋଶ ଦୂରରେ ଗୋଟିଏ ପର୍ବତ ଅଛି । ସେ ପର୍ବତର ଦକ୍ଷିଣ ଦିଗରେ ଗୋଟିଏ ବଡ଼ ଗୁମ୍ଫା ଅଛି । ସେ ଗୁମ୍ଫା ଭିତରେ ତିନୋଟି ଅସୁରୁଣୀ ଅଛନ୍ତି । ତାଙ୍କର ଜନ୍ମକାଳୁ ଆଖି ନ ଥିଲା । ଅନ୍ଧୁଣୀ ହୋଇ ବୁଲୁଥାନ୍ତି । ଅନ୍ଧୁଣୀହେବାରୁ ବନ ଦୁର୍ଗାଙ୍କୁ ବହୁତ ସେବାକରି ଆଖି ମାଗିଲେ । ବନଦୁର୍ଗା ସେ ତିନଙ୍କ ଗୋଟିଏ ଆଖି ଦେଇ କହିଲେ, ଏ ଆଖିଟି ନିଅ ତିନ ଜଣଯାକ ଭାଗରେ ଲଗିଥିବ । ଯେ ଯେତେବେଳେ ଯାହା ଦେଖିବାକୁ ମନ କରିବ, ଆଖିଟି ଧରି ଗୁନ୍ଧିଲେ ତାକୁ ସବୁ ଦିଶିବ । ଏହା କହି ବନଦୁର୍ଗା ଅନ୍ତର୍ଦ୍ଧାନ ହୋଇଗଲେ । ଅସୁରୁଣୀମାନେ ଆଖିଟି ନେଇ ଗୁମ୍ଫା ଭିତରେ ଅଛନ୍ତି । ସେ ଯେଉଁଠାରେ ବସନ୍ତି ସେହିଠାରେ ମୁଣ୍ଡଉପରେ ଗୋଟିଏ ଶିକା ଲଗାଇ ତହିଁରେ ଆଖିଟି ଥୋଇ ଦେଇଥାନ୍ତି । ଯେତେବେଳେ ଯାହାର ଦେଖିବାକୁ ଲୋଡ଼ା ପଡ଼େ ସେ ଆଖିଟି ଆଣି ଦେଖେ, ପୁଣି ସେହିଠାରେ ଥୋଇଦିଏ । ତୁ ଏବେ ବାଟେ ବାଟେ ସେ ଗୁମ୍ଫାକୁ ଯାଇ କିଛି ପାଟି ତୁଣ୍ଡ ନ କରି ଆଗ ସେ ଆଖିଟି ଆଣି ହାତରେ ମୁଠା କରି ଧରିଥିବୁ । ତୁ ଯିବାର ବାସନା ଜାଣି ଅସୁରୁଣୀମାନେ କିଏ ଅଇଲା ଦେଖିବେ ବୋଲି ଆଖି ଖୋଜିବେ । ଆଖିଟି ନ ପାଇ ନାନାପ୍ରକାରେ ଧମକ ଚମକ ଦେଖାଇବେ । ତୁ ତହିଁକି କିଛି ନ ଡରି ବୋଲିବୁ, ପାଟି କଲେ କାଳଭୈରବଙ୍କୁ ଡାକ ଦେବି । ତୋଠାରୁ ଏହା ଶୁଣିଲେ ସେମାନେ ମହାଭୟ କରି ତୁ ଯାହା ପଚାରିବୁ ତାହା କହିଦେବେ । ତାଙ୍କଠାରୁ ନିଶିଗ୍ର ରାକ୍ଷସୀର ସମସ୍ତ ଖବର ବୁଝିବୁ । ଏହା କହି ସେ ତାପସ ତାଙ୍କ ବାଟେ ଚାଲିଗଲେ । ପୁରୁଜିତ ଏ କଥା ଶୁଣି ମନରେ ଭାରି ଖୁସିହୋଇ

ସେହି ଅଗ୍ନାଗ୍ନି ବନସ୍ତ ଭିତରେ ପଶି ଗଲା । ବନର ଫଳମୂଳ ଖାଇ ନିଧୁମ ଖରାବେଳେ ଗୁମ୍ଫା ଭିତରେ ପଶିଲା । ଦେଖିଲାବେଳକୁ ସେ ଛନ ଅସୁରୁଣୀଯାକ ବସିଛନ୍ତି । ତାଙ୍କ ରୂପ କଣ କହିବ ? ଧାନଭୁଟୁଆଁ ହାଣ୍ଡି ପରି ମୁଣ୍ଡମାନ ଦିଶୁଛି, କାହାରି ଅଖି ନାହିଁ । କପାଳରେ ସାପ ଗାତପରି ଗୋଟେ ଗୋଟେ କଣା ଅଛି, ଦୋପଖା ଚୁଲ୍ଲୀ ପରି ନାକ, କୁଲାପରି ନଟ, ଲଙ୍ଗଳଲୁହା ପରି ଦାନ୍ତ, ମୂଷା କାନ ପରି କାନ, ମୁଣ୍ଡବାଳଯାକ ଅଡ଼ୁଆ ଝୋଟ ପରି, ତାଳଗଛଠୁ ଅଧେଲେଖେଁ ଉଚ୍ଚ ହେବେ । ତାଙ୍କୁ ଦେଖି ପୁରୁଜିତ କିଛି ଭୟ ନ କରି, ଥିର ଥିର ଯାଇ ଶିକାରୁ ଅଖିଟି କାଢ଼ି ନେଇଗଲା । ମନୁଷ୍ୟ ବାସନା ବାରି ଅସୁରୁଣୀମାନେ ଝୁପୁ ଝୁପୁ ହୋଇ କଁଆବାଉଁ ହେଲେ । ଗୋଟେ ବୋଇଲା, ଅଲୋ ଭଉଣୀ, ଆଜି କଣ ନର ନର ଗନ୍ଧ କରୁଛି ମ, ଟିକେ ଅଖି ଆଣିଲ ମୁଁ ଦେଖେ । ଏହା ଶୁଣି ଆଉ ଗୋଟେ ବୋଇଲା ମତେ ଦେ ମୁଁ ଆଗ ଦେଖେ । ଏପରି ବହେ ଖଳବଳ ହୋଇ ଅଖି ଆଣିବାକୁ ଗଲେ । ଶିକା ଦରାଣ୍ଡି ଦେଖିଲା ବେଳକୁ ଅଖିଟି ନାହିଁ, ଯେ ଅଖି ଆଣିବାକୁ ଉଠିଥିଲା ସେ ବୋଇଲା କିଲୋ ଅଖି ତ ନାହିଁ, କିଏ ନେଲା ? ସେ ବୋଇଲା ତୁ ନେଲୁ, ଏ ବୋଇଲା ତୁ ନେଲୁ । ଏମିତି ବୋଲାବୋଲି ହୋଇ ଧରାଧରି ଗଡ଼ାଗଡ଼ି ମରାମରି ହେଲେ । ତାଙ୍କର ଏ ରହସ୍ୟ ଦେଖି ପୁରୁଜିତ ଆଉ ସମ୍ଭାଳି ନ ପାରି କରି କରି ହସିଦେଲା । ଅସୁରୁଣୀମାନେ ତା ହସ ଶୁଣି ଦାନ୍ତପାଟି ରଗଡ଼ି ବୋଇଲେ, କଲୋ, କିଏ ଆମ ଘରେ ପଶିଲା ? ଏହା କହି ତାକୁ ଧରିବାକୁ କୋଧରେ କାମୁଡ଼ା ହୋଇ ଉଠିଲେ । କାହା'ର ତ ଅଖି ନାହିଁ, ହାତ ଗୋଡ଼ ଛାଟି ଏ କଣ ସେ କଣ ଦରାଣ୍ଡିଲେ । ପୁରୁଜିତ ତାଙ୍କର ବିକଟାଳ ମୂର୍ତ୍ତି ଦେଖି କହିଲା, ଅଲୋ ଅସୁରୁଣୀଏ, ଚୁପ୍ ରହି ମୋ କଥା ଶୁଣ, ନୋହିଲେ କାଳଭୈରବକୁ ଡାକ ଦେବି । ଅସୁରୁଣୀମାନେ ଭୟରେ ଥର ଥର ହାତ ଯୋଡ଼ି କହିଲେ, "ତୁମ୍ଭେ କିଏ ? ଆମକୁ ରକ୍ଷାକର । କାଳଭୈରବକୁ ଡାକ ନାହିଁ, ତା ନ ଶୁଣିଲେ ଆମର ଛାତି ଥରୁଛି । ଆମେ ପାଞ୍ଚ ଭଉଣୀ ଥିଲୁ, ବଡ଼ ଭଉଣୀର ନା ନିଶିଖା, ତା ତଳ ଭଉଣୀର ନା ବିକଟା । ସେ ବିକଟାକୁ ଦନେ

କାଳଭୈରବ ଆସି ମୋତେ ଖାଇଦେଲା । ସେ ଦିନୁ ଆମେ ଛଅଭଉଣୀ ପ୍ରାଣ ଭୟରେ ଘର ଦ୍ୱାର ଛାଡ଼ି ଆସି ବଣରେ ପଶି ଏ ଗୁହା ଭିତରେ ଲୁଚିଥାଉଁ । ତୁମେ ଆମକୁ ଯାହା ମାଗିବ ତା ଦେବୁ । ଆଉ କାଳଭୈରବକୁ ଡାକ ନାହିଁ । ଆମର ଆଖିଟି ରଖିଚ; ଦୟା କରି ଆମକୁ ଦିଅ । ପୁରୁକୁତ ବୋଇଲା, ଯେବେ ଏପରି ବୋଲୁଚ ତୁମର ବଡ଼ ଭଉଣୀ ନିଶିଗ୍ର କେଉଁଠି ଅଛି ମୋତେ କହିଦିଅ । ମୁଁ ତୁମର ଆଖିଟି ଦେଇ ଏଠାରୁ ଚାଲିଯିବି । ଆଉ କେବେ କାଳଭୈରବକୁ ଡାକିବି ନାହିଁ । ଅସୁରୁଣୀମାନେ ବୋଇଲେ, "ଯେଉଁଦିନ ବିକଟାକୁ କାଳଭୈରବ ମୋଡ଼ି ଖାଇଦେଲା, ସେ ଦିନଠାରୁ ଆମେ ଛଅଭଉଣୀ ପ୍ରାଣ ବିକଳରେ ପଳାଇ ଆସି ଏଠାରେ ଲୁଚିଅଛୁ । ବଡ଼ ଭଉଣୀ କେଉଁଠି ଲୁଚି ରହିଲା, ଆମେ ଜାଣିନାହୁଁ । ଏବେ ତୁମେ ଗୋଟିଏ କଥା କର, ଏଠାରୁ ପାଞ୍ଚକୋଶ ଗଲେ ଗୋଟିଏ ସାନ ପର୍ବତ ପଡ଼ିବ । ସେ ପର୍ବତ ତଳେ ଗୋଟିଏ ଦେଉଳ ଅଛି, ତହିଁରେ ବନଦୁର୍ଗା ଅଛନ୍ତି । ଆମେ ତାଙ୍କ ସେବା କରି ଆଖିଟି ପାଇଥିଲୁ । ତୁମେ ଯେବେ ସେ ବନଦୁର୍ଗାଙ୍କୁ ସେବା କରିବ, ସେ ପ୍ରସନ୍ନ ହୋଇ ନିଶ୍ଚେ ନିଶିଗ୍ରର ସବୁ କଥା କହିଦେବେ । ପୁରୁକୁତ ଏ କଥା ଶୁଣି ଅସୁରୁଣୀମାନଙ୍କୁ ଆଖିଟି ଦେଇ ଚାଲିଗଲା । ଯାଉ ଯାଉ ଏଣେ ତେଣେ ବାଟ ବଣା ହୋଇ କେତେବେଳକୁ ବନଦୁର୍ଗାଙ୍କ ଦେଉଳ ନିକଟରେ ମିଳିଲା; ସେଠାରେ ଦେଖିଲା ଯେ ଗୋଟିଏ ମନୁଷ୍ୟ ନାହାନ୍ତି । ଚାରିଆଡ଼ ଅରଣ୍ୟ; ବାଘ, ଭାଲୁ, ମିରିଗ ଓ କେତେ ବଡ଼ ବଡ଼ ସାପ ବୁଲୁଛନ୍ତି । ତାଙ୍କୁ ଦେଖି କିଛି ନ ଡରି ଝର ପାଣିରେ ସ୍ନାନ କରି ବନରୁ ଫଳ ଫୁଲ ତୋଳି ଦେଉଳ ଭିତରେ ପଶିଲା । ଚତୁର୍ଭୁଜା ହୋଇ ମହିଷମର୍ଦ୍ଦିନୀ ବନଦୁର୍ଗା ସିଂହାସନରେ ବିଜେ କରିଛନ୍ତି । ପୁରୁକୁତ ତାଙ୍କ ଚରଣ ତଳେ ପଡ଼ି, ଫଳଫୁଲ ଦେଇ ହାତ ଯୋଡ଼ି ବହୁତ ବିନୟରେ ଅନେକ ସ୍ତୁତି କଲା । ତାହାର ଭକ୍ତି ଦେଖି ବନଦୁର୍ଗା ସନ୍ତୋଷରେ ନିଜରୂପ ଧରି ଆଗରେ ଉଭାହୋଇ କହିଲେ, "ବାବୁ ! ତୋ ସେବାରେ ମୁଁ ବଡ଼ ସନ୍ତୋଷ ହେଲି, କି ବର ମାଗିବୁ ମାଗେ ।" ପୁରୁକୁତ ମସ୍ତକରେ ହାତଯୋଡ଼ି କହିଲା, "ମା ! ଯେବେ ପ୍ରସନ୍ନ ହେଲ

ମୋତେ ଏହି ବର ଦିଅ; ମୁଁ ନିଶିବ୍ର ରାକ୍ଷସୀକି ହାଣି ତାର ମୁଣ୍ଡ ନେବି । ସେ ରାକ୍ଷସୀ କେଉଁଠାରେ ଅଛି, ତାହା ମୋତେ କହି ଦିଅ ।”ବନଦୁର୍ଗା ବୋଇଲେ, “ତୋର ବାଞ୍ଛା ସିଦ୍ଧ ହେଉ । ନିଶିବ୍ର ରାକ୍ଷସୀକି ଯେଉଁପରି ମାରିବୁ ତାହା ତୋତେ କହୁଅଛି, ମନରୁ ନ ଭୁଲି ହେଜି ରଖିଥିବୁ । ସେ ରାକ୍ଷସୀର କଥା ବଡ଼ ଅଗୋଚର । ସେ ଯାହାକୁ ଚାହିଁଦେବ, ସେ ଲୋକ ସେହିକ୍ଷଣି ପଥର ହୋଇଯିବ । ତାକୁ ମାରିବାକୁ ଅନେକ ରଜା ରଜପୁଅ, ବୀର ଓ ମହାବୀରମାନେ ଆସି ତା ଦୃଷ୍ଟି ପଡ଼ିବା ମାତ୍ରେ ପଥର ହୋଇ ସେହିଠାରେ ଅଛନ୍ତି । ଏଠାରୁ ସେ ଥିବା ସ୍ଥାନ ପନ୍ଦର ଦିନର ବାଟ । ବାଟଯାକ ମହାରଣ୍ୟ ଦୁର୍ଗମପଥ । ଏଠାରୁ ଉତ୍ତର ମୁଖରେ ଗଲେ ବାଟରେ ଅନେକ ବନ, ପର୍ବତ, ଝରଣା, ଗହ୍ୱର, ଖାଲଖଣା, ଡଙ୍ଗର ପଡ଼ିବ । ତହିଁପରେ ଗୋଟିଏ ବଡ଼ ପର୍ବତ; ସେ ପର୍ବତର ପୂର୍ବ ଦିଗରେ ଦଶକୋଶ ଲମ୍ବ, ସାତକୋଶ ଓସାର ଏକ ମରୁଭୂମି ଅଛି । ସେ ମରୁଭୂମିରେ ଗଛ, ପତ୍ର, ଘାସ, ଲଟା କିଛି ନାହିଁ । ଜୀବ ଜନ୍ତୁ କେହି ନାହାନ୍ତି; ଚାରିଆଡ଼େ ବାଲି ପୁରିଅଛି । ସେଠାରେ ନିଶିବ୍ର ରାକ୍ଷସୀର ଘର । ସବୁବେଳେ ସେ ସେହିଠାରେ ଥାଏ । ଯେ ତା ଆଖିରେ ପଡ଼ିବ ସେହିଠାରେ ପଥର ହୋଇ ରହିଯିବ । ଏହିପରି ଅସଂଖ୍ୟ ଲୋକ ଯାଇ ପଥର ହୋଇ ସେଠାରେ ଅଛନ୍ତି । ତୁ ଏପରି ବେଶରେ ଗଲେ ତାକୁ ମାରି ପାରିବୁ ନାହିଁ ।” ଏହା କହି ଗୋଟିଏ ଖଣ୍ଡା; ଯୋଡିଏ ମନପବନ କଠାଉ, ଗୋଟିଏ ଟୋପି, ଆଉ ଗୋଟିଏ କୁରୁଡା ଦେଇ ବନଦୁର୍ଗା କହିଲେ; ଏ କଠାଉରେ ବସିଲେ ଯହିଁକି ମନ କରିବୁ, ତହିଁକି ମୁହୂର୍ତ୍ତିକେ ଯାଇ ପାରିବୁ । ଆଉ ଏ କୁରୁଡା ଟୋପି ଦେହରେ ମୁଣ୍ଡରେ ପିନ୍ଧିଥିଲେ, ତୁ ସମସ୍ତଙ୍କୁ ଦେଖୁଥିବୁ, ତୋତେ କେହି ଦେଖି ପାରିବେ ନାହିଁ । ଏ ଖଣ୍ଡାରେ ଯାହାକୁ ହାଣିବୁ, ସେ କାଠ ହେଉ ପଥର ହେଉ, ଲୁହା ହେଉ, ଦେବତା, ଅସୁର, ମନୁଷ୍ୟ ବା ଯେ ହେଉ ଏକା ପ୍ରହାରକେ ଦୁଇଗଡ଼ ହୋଇ ଛିଡିଯିବ । ତୁ ଏହା ସବୁ ନେ, ଆଉ ଗୋଟିଏ ଦର୍ପଣ ଦେଉଅଛି ନେଇଥିବୁ । ଯେତେବେଳେ ରାକ୍ଷସୀର ଘର ନିକଟ ହୋଇଯିବ ଦୁଇକୋଶ ବାଟ ଥିବ; ଆଉ ତେଣିକି ମୁହଁ ନ କରି

ଏ ଦର୍ପଣକୁ ଗୃହିଁ ପଛେଇ ପଛେଇ ଯିବୁ । ଦର୍ପଣକୁ ଗୃହିଁଥିଲେ ତାର ଘରଦ୍ୱାର, ସେଠିକାର ସ୍ଥାନ, ସେ କଣ କରୁଥିବ ଏହା ସବୁ ତୋତେ ଦଶୁଥିବ । ତୁ ଦେଖି ତାର ଗଢଣଢ; ହାଲଚାଲ ସବୁ ଅଟ ଉଣ୍ଡିବୁ । ଦେଖିବୁ ଯେତେବେଳେ ଅଚେତ୍ନ ହଦରେ ଶୋଇବ, ସେତକବେଳେ ହଠାତ୍ ମନପବନ କଠାଉରେ ଚଢ଼ିପଛେଇ ପଛେଇ ଯାଇ ତାର ମୁଣ୍ଡ ହାଣିଦେବୁ । ମୁଣ୍ଡ ଛିଡବା ସଙ୍ଗେ ସଙ୍ଗେ ଅଖାରେ ପୁରାଇ ନବାଡ଼ କରି ବାନ୍ଧିଦେବୁ । ଯେବେ ଏଥିରୁ ଗୋଟିଏ କଥା ଭୁଲିଯିବୁ ସେହିଠାରେ ପଥର ହୋଇ ରହିବୁ, ଆଉ ଅସି ପାରିବୁ ନାହିଁ । ଏହା କହି ଖଣ୍ଡା, ଦର୍ପଣ, କଠାଉ, ଟୋପି, ବୁଝୁଣା ଦେଇ ବନଦୁର୍ଗା ଅନ୍ତର୍ଦ୍ଧାନ ହୋଇ ଗୃଲିଗଲେ । ପୁରୁଜିତ ଦେବୀଙ୍କଠାରୁ ବର ପାଇ ଅନନ୍ଦ ହୋଇ ଗୃଲି-ଗଲା । କିଛି ବାଟଯାଇ ଝରଣା ପାଣିରେ ସ୍ନାନ ପ୍ରକାର କରି ବନରୁ ଫଳ ମୂଳ ଖାଇ ସୁସ୍ଥ ହେଲା । ତହିଁପରେ ବନଦୁର୍ଗାଙ୍କୁ ସୁମରଣା କରି ମନପବନ କଠାଉରେ ଚଢ଼ି ତକ୍ଷଣେ ନିଶିର ରାକ୍ଷସୀ ଥିବା ସ୍ଥାନରେ ଯାଇ ମିଳଲା । ଅସୁରୁଣୀ ଘର ଆଉ ଦୁଇକୋଶ ବାଟ ଅଛି, ତେଣିକି ନ ଯାଇ ସେହିଠାରେ ଦର୍ପଣ ଧରି ଗୃହିଁ ଦେଖାନ୍ତେ, ରାକ୍ଷସୀର ଘର ଦ୍ୱାର ଓଗେର ସବୁ ଦଶିଲା । ତାର ଗୃରିପାଖ ଯାକ ଯେତେ ଲୋକ ପଥର ହୋଇଅଛନ୍ତି ତା ସବୁ ଦଶିଲା । ଆଉ ଦେଖିଲା ଯେ, ରାକ୍ଷସୀର ରୂପ ଅତି ଭୟଙ୍କର; ଗୋଡ଼ ନାହିଁ, ଅଜଗର ସାପ ପରି ଅଣ୍ଟାଠାରୁ ତଳକୁ ଦଶୁଅଛି । ହାତ ଅଛି ଛଅଟା, ମୁଣ୍ଡ ତନିଟା; ସେ ମୁଣ୍ଡରେ ଅନେକ ସର୍ପ ଘର କରିଅଛନ୍ତି । ସେ ସାପମାନେ ମନୁଷ୍ୟ ବାସନା ବାଜିଲେ, ଫଣା ଟେକି ଫୁ ଫୁ କରି ଉଠନ୍ତି । ଆଉ ତାର ପିଠିରେ ଯୋଡ଼େ ପକ୍ଷୀ ଅଛି, ଆଖି ଯୋଡ଼ାକ ଦଶୁଛି ସତେ କି ପଥର କୋରଡ଼ର ମୁହିଁ, ଅତି ବିକଟାଳ ପରି ଦାନ୍ତ ପଦାକୁ ବାହାରିଛି । ଏହା ସବୁ ଦର୍ପଣରେ ଦେଖି ପୁରୁଜିତ ଆଉ ତେଣିକି ନ ଯାଇ ସେହିଠାରେ ରହି ଦେଖୁଥାଏ । ତେଣେ ଅସୁରୁଣୀ, ମଦ, ମାଂସ, ପିଠାପଣା ଏଣୁ ତେଣୁ ପେଟେ ଖାଇ ଘରଦ୍ୱାର ଓଲାଓଳ କରି ଗୃରିଆଡ଼େ ଟିକେ ଗୃହିଁଦେଇ ଶୋଇଲା । ଟିକେ ଗଲାରୁ ତାକୁ ବଡ଼ ନିଦ ଲାଗିଗଲା । ଏଣେ ପୁରୁଜିତ

ଦର୍ପଣ ଧରି ଦେଖୁଥାଏ, ଜାଣିଲା ଯେ ଏଥର ଅସୁରୁଣୀ କନ୍ଦରେ ଶୋଇଲା । ଏତିକିବେଳେ ଗଲେ ଆଉ କିଛି ଭୟ ନାହିଁ । ଏହା ବିଚାରି ମନପବନ କଠାଉରେ ଚଢ଼ି ହାତକେ ଖଣ୍ଡା, ହାତକେ ଦର୍ପଣ ଧରି ପଛେଇ ପଛେଇ ଚାଲିଗଲା । ବନଦୁର୍ଗାଙ୍କ ବର ପ୍ରସାଦରୁ ମନରେ କିଛି ଭୟ ନ କରି ହଠାତ୍ ସେ ଅସୁରୁଣୀ ପାଖରୁ ଯାଇ ସେହି ଖଣ୍ଡାରେ ତାର ମୁଣ୍ଡ ହାଣିଦେଲା । ଏକା ପ୍ରହାରକେ ଛଅ ମୁଣ୍ଡଯାକ ଛିଡଗଲା; ଗଣ୍ଡିଟା ପଡ଼ି ତେଉଁଥାଏ ।

ଏଣେ ପୁରୁଜିତ ଗୋଟାଏ ଅଖାରେ ମୁଣ୍ଡ ପୁରାଇ ବାନ୍ଧିଦେଲା । ସେହି ମୁଣ୍ଡକୁ ଧରି ମନପବନ କଠାଉରେ ବସି ସେହିକ୍ଷଣି ଅସି କଣ୍ୟୁଗିରି ଦେଶରେ ମିଳିଲା । ସେ ଫେରି ଆସିବା ଶୁଣି ରଜା ଆଶ୍ଚର୍ଯ୍ୟ ହୋଇ ମନ୍ତ୍ରୀମାନଙ୍କୁ ଡକାଇ କହିଲେ, "ଦେଖ ପୁରୁଜିତକୁ ମରାଇବା ପାଇଁ ଆମେ କେତେ କରି ପଠାଇଥିଲେଁ । ସେ କାହିଁକି ମରନ୍ତା ? ଯେମିତି ସେମିତି ଫେରି ଆସିଲାଣି । ମାତ୍ର ଅସୁରୁଣୀର ମୁଣ୍ଡ ଆଣିଛି କି ନାହିଁ ଦେଖିବା ।" ଏହା କହି ପୁରୁଜିତକୁ ଡକାଇଲେ । ପୁରୁଜିତ ଆସି ରଜାଙ୍କୁ ପ୍ରଣାମ କରି କହିଲା, "ମହାରାଜ ! ହଜୁରଙ୍କ ଆଜ୍ଞାରେ ମୁଁ ଯାଇ ଅନେକ ଦେଶ, ଗ୍ରାମ, ବନ, ପର୍ବତ, ଗହ୍ୱର, ଝାଡ଼, ଡଙ୍ଗର-ବୁଲି ବୁଲି ବହୁତ କଷ୍ଟରେ କିଣିରି ରାକ୍ଷସୀକି ପାଇଲି । ସେ ରାକ୍ଷସୀର କଥା ବଡ଼ ଚମତ୍କାର । ତାର ପିଠିରେ ମୁଣ୍ଡ, ଏକ କାନ୍ଧରେ ଛଅ ମୁଣ୍ଡ, ଦେହଯାକ ଲୋମ, ଅଣ୍ଟାରୁ ତଳକୁ ସାପ ପରି ଅଛନ୍ତି । ଅଧୌ ଗୋଡ଼ ନାହିଁ । ସେ ନିର୍ଜନ ମରୁ ଭୂମିରେ ଘର କରିଥିଲା । ମୁଁ ତାକୁ ବହୁତ କଷ୍ଟରେ ମାରି ତାର ମୁଣ୍ଡ ଆଣିଅଛି । ଏହା ଶୁଣି ରଜା ମନ୍ତ୍ରୀ ସମସ୍ତେ ଆଶ୍ଚର୍ଯ୍ୟ ହୋଇ କହିଲେ, କାହିଁ, "ସେ ମୁଣ୍ଡ କେଉଁଠି ରଖିଅଛ, ଦେଖା ।" ପୁରୁଜିତ କହିଲା, "ଆପଣ ଏକା କଣ ଦେଖିବେ । ସଭା କରି ବସନ୍ତୁ, ମୁଁ ସେ ମୁଣ୍ଡ ଆଣି ଦେଖାଇବି । ଏକବାରେ ସବୁଲୋକ ଦେଖିବେ ।" ଏହା ଶୁଣି ରଜା ସେହିକ୍ଷଣି ସଭା କରି ବସିଲେ । ପାତ୍ର, ମନ୍ତ୍ରୀ, ଅମାତ୍ୟ, ଦଳେଇ, ଦଳବେହେରା ପାଇକ, ରାଉତ, ଭଲଲୋକ, ମନ୍ଦଲୋକ ସମସ୍ତେ ଆଶ୍ଚର୍ଯ୍ୟ ହୋଇ

ଦେଖିବା ପାଇଁ ଆସି ସଭାରେ ବସିଲେ । ପୁରୁଜିତ ସେ ମୁଣ୍ଡ ଥିବା ଅଖାଟି ଆଣି ସଭା ସମ୍ମୁଖରେ ଥୋଇ କହିଲା, "ସମସ୍ତେ ଏକ ଦୃଷ୍ଟିରେ ଦେଖ ।" ଏହା ଶୁଣି ରାଜା, ମନ୍ତ୍ରୀ ଆଦି ସକଳେ ଏକ ଦୃଷ୍ଟିରେ ଚାହିଁ ରହିଲେ । ପୁରୁଜିତ ଦର୍ପଣ ଧରି ପଛଆଡ଼େ ହାତ ବଢ଼ାଇ ଅଖା ଫିଟାଇ ମୁଣ୍ଡଟି କାଢ଼ି ଥୋଇଦେଲା । ସେ ମୁଣ୍ଡକୁ ଚାହିଁଦେବା ମାତ୍ରେ ରାଜା, ମନ୍ତ୍ରୀ ଆଦି ଯେ ଯେଉଁଠାରେ ବସିଥିଲେ ସେ ସେହିଠାରେ ପଥର ହୋଇଗଲେ । ପୁରୁଜିତ ଏହା ଦେଖି ତତ୍‌କ୍ଷଣେ ସେ ମୁଣ୍ଡଟି ଅଖାରେ ବାନ୍ଧି ଯତ୍ନରେ ରଖିଦେଲା । ତହିଁପରେ ତାକୁ ଯେଉଁ ବୁଢ଼ା କେଉଟ ରାଜା ପାଳିଥିଲା, ତାହାକୁ ଡାକିଆଣି କହିଲା, "ବାପା, ଦେଖ, ଏ ପାପୀ ରାଜା ତୁମ୍ଭଙ୍କୁ ତଡ଼ିଦେଇ ରାଜ୍ୟ ଭୋଗ କରୁଥିଲା, ଏବେ ସେହି ପାପରୁ ଦଳବଳ ସହିତରେ ପଥର ହୋଇଗଲା । ଏଥର ତୁମ୍ଭେ ନିଶ୍ଚିନ୍ତରେ ରାଜତ୍ୱ କର । ମୁଁ ବର୍ଦ୍ଧମାନ ଦେଶକୁ ଯାଉଛି । ସେ ଦେଶ ରାଜାଙ୍କର ଗୋଟିଏ ସୁନ୍ଦରୀ କନ୍ୟା ଅଛି । ତାକୁ ଆଣି ପୁଣି ଏଠାକୁ ଆସିବି । ଏହା ଶୁଣି କେଉଟ ରାଜା ପୁରୁଜିତକୁ ଆଶୀର୍ବାଦ କରି କହିଲା, "ବାବୁ, ତୁ ମୋର ଧର୍ମ ପୁତ୍ର, ତୋତେ ଦେଖୁଥିଲେ ମୋର ସବୁ ଦୁଃଖ ଯିବ । ତୁ ଆସିବାଯାଏ ମୁଁ ଏ ରାଜ୍ୟ ପାଳୁଅଛି । ଭଗବାନ ତୋର ମଙ୍ଗଳ କରନ୍ତୁ । କନ୍ୟା ଘେନି ଫେରି ଆସିଲେ ତୁ ରାଜା ହେବୁ ।" ଏହା କହି ବିଦାୟ ଦେଲା । ପୁରୁଜିତ ସେଠାରୁ ଯାଇ ତାର ନିଜ ମାତାଙ୍କୁ ନମସ୍କାର କରି ସବୁ କଥା କହିଲା । ତହିଁପରେ ମାଠାରୁ ବିଦାୟ ନେଇ ଓ ସେ ମୁଣ୍ଡଟି ଧରି ମନପବନ କଠାଉରେ ବସି ବର୍ଦ୍ଧମାନ ଦେଶକୁ ଚାଲିଗଲା । ବର୍ଦ୍ଧମାନ ଦେଶର ରାଜା ପୂର୍ବରୁ ଏ ସବୁ କଥା ଶୁଣି ଆନନ୍ଦରେ ଥିଲେ । ପୁରୁଜିତ ଯିବାର ଶୁଣି ଅନେକ ଉତ୍ସବ କରି ବାଟରୁ ପାଛୋଟି ଆସି ତାକୁ ନେଇଗଲେ । ପୁରୁଜିତ ଗୌରବ ପାଇ ଯେପରି ନିଶିରା ରାକ୍ଷସୀକି ମାରିଥିଲା ସେ ସବୁ ତାଙ୍କ ଆଗେ କହିଲା । ରାଜା ସନ୍ତୋଷ ହୋଇ ପୁରୁଜିତକୁ କନ୍ୟା ଦେବାପାଇଁ କହିଲେ । ଏହା ଶୁଣି ସେ କନ୍ୟା ବୋଇଲା, "ମୁଁ ନିଶିରା ରାକ୍ଷସୀର ମୁଣ୍ଡ ନିଜେ ନ ଦେଖିଲେ କେବେହେଁ ମୋର ବିଭା ହେବ ନାହିଁ ।" ପୁରୁଜିତ କହିଲା

"ସେ ମୁଣ୍ଡକୁ ଯେ ଦେଖିବ ସେ ପଥର ହୋଇଯିବ । ମାତ୍ର ମୋଠାରେ ଗୋଟିଏ ଦର୍ପଣ ଅଛି । ସେ ଦର୍ପଣ ଧରି ମୁଣ୍ଡକୁ ପଛ କରି ଦେଖିଲେ କିଛି ପ୍ରମାଦ ନାହିଁ । ଏହା କହି ମୁଣ୍ଡ ଓ ଦର୍ପଣ ବର୍ଦ୍ଧମାନ ରାଜାଙ୍କ ଗୋଚରେ ଅନ୍ତଃପୁରକୁ ପଠାଇ ଦେଲା । ରାଜକନ୍ୟା ଦର୍ପଣରେ ନିଶିରା ରାକ୍ଷସୀର ମୁଣ୍ଡ ଦେଖି ଆନନ୍ଦରେ ବରମାଳା ଦେଇ ପୁରୁଜିତଙ୍କ ବରିଲା । ଏହା ଦେଖି ବର୍ଦ୍ଧମାନ ରାଜା ଅନେକ ଉତ୍ସବ କରାଇ ପୁରୁଜିତ ସହ ନିଜର କନ୍ୟାକୁ ବାହା ଦେଲେ । ପୁଣି ଅନେକ ଧନ ରତ୍ନ, ହାତୀ ଘୋଡ଼ା, ଦାସ ଦାସୀ, ବସନ ଭୂଷଣ ଯଉତୁକ ଦେଇ ବର କନ୍ୟା ଦୁହିଙ୍କୁ ବିଦାୟ କଲେ । ପୁରୁଜିତ ଉତ୍ସବରେ କନ୍ୟା ଘେନି ଏହି କଣ୍ୟୂଗିରି ଦେଶରେ ଆସି ପ୍ରବେଶ ହେଲା । ସେ ଆସିବାର ଶୁଣି କେଉଁଠ ରାଜା ରାଜ୍ୟରେ ଅନେକ ଉତ୍ସବ କରାଇ ପୁରୁଜିତକୁ ଆପଣାର ଦଣ୍ଡ ସିଂହାସନ ଦେଇ ରାଜ୍ୟରେ ରାଜା କରାଇଲେ । ପୁରୁଜିତ ସେହି ଦିନଠାରୁ ରାଜା ହୋଇ ନିଶ୍ଚିନ୍ତରେ ପ୍ରଜାଙ୍କୁ ପାଳନ କଲା । ସାମନ୍ତ ବ୍ରାହ୍ମଣ ଏ କଥା କହି ବୋଇଲେ, "ଅରେ ଅବୋଲକରା, ସେହି ଦିନଠାରୁ ସେ ସଭାରେ ରଜା ମନ୍ତ୍ରୀ ଆଦି ଯେତେ ଲୋକ ବସିଥିଲେ, ସେ ସମସ୍ତେ ପଥର ହୋଇ ଆଜି ପର୍ଯ୍ୟନ୍ତେ ବସିଅଛନ୍ତି ।" ଏହା ଶୁଣି ଅବୋଲକରା ବୁଜୁଲି ବାଜୁଲି ଲୋଟା କପଡ଼ା ଭାର କରି ସାମନ୍ତଙ୍କ ପଛେ ପଛେ ଗଲା ।

ପଥର ସଭା କଥା ସମାପ୍ତ

---

ଏଠାରେ ଅବୋଲକରା କାହାଣୀର ପ୍ରଥମ ଭାଗ ଶେଷ ହେଲା ।
ଏଣିକି ଅବୋଲକରା ଯେତେ ପ୍ରଶ୍ନ ପଚାରିବ ତାହାସବୁ
ଦ୍ୱିତୀୟ ଭାଗରେ ପ୍ରକାଶ କରାଯିବ ।

**ସ ମା ପ୍ତ**

---

ମୁଦ୍ରାକର—ଶ୍ରୀଲକ୍ଷ୍ମୀଧର ଗରବଡ଼ୁ, ଶ୍ରୀରାଧାରମଣ ପ୍ରେସ,
କଟକ, ୧୯୪୭

# ବିଜ୍ଞାପନ

ସୁନ୍ଦର, ସରସ ଫେଉଞ୍ଚ କାଗଜର ବନ୍ଧା । ଅଗ୍ରିମ ସହ
ଅର୍ଡର ପାଇଲେ ପାର୍ଶଲ ଭିଃ ପିଃ ରେ ପଠାଯାଏ ।

| | |
|---|---|
| ମାର୍କଣ୍ଡ ପୁରାଣ | ଟ ୬୮ |
| ପଦ୍ମପୁରାଣ | ଟ ୨୫ |
| ଇତିହାସ ପୁରାଣ | ଟ ୧୫ |
| ଗରୁଡ ପୁରାଣ | ଟ ୧୫ |
| ସୂର୍ଯ୍ୟ ପୁରାଣ | ଟ ୧୮ |
| ବିଲଙ୍କା ରାମାୟଣ | ଟ ୦ ୯ |
| ,, ପୂର୍ବ | ଟ ୧। |
| ,, ଉତ୍ତରା | ଟ ୧। |
| ନବଗ ଚିନ୍ତାମଣି | ଟ ୭୫ |
| ଛାନ୍ଦରତ୍ନାକର | ଟ ୧୮ |
| ରସିକହାରାବଳୀ | ଟ ୦ ୫ |
| ଅବନାରସତରଙ୍ଗ | ଟ ୦ ୫ |
| ଖୁଲଣାସୁନ୍ଦରୀ | ଟ ୧୮ |
| ଅବୋଲକରା କାହାଣୀ ପ୍ରଥମ | ଟ ୦ ୫୬/ |
| , ଦ୍ୱିତୀୟ | ଟ ୦ ୫୬/ |
| ,, ତୃତୀୟ | ଟ ୦ ୯ |
| ,, ଚତୁର୍ଥ | ଟ ୦ ୯ |

ପ୍ରାପ୍ତିସ୍ଥାନ :—ଶ୍ରୀରାଧାରମଣ ପୁସ୍ତକାଳୟ
ବାଲୁବଜାର, ପୋଃ ଅଃ ଚାନ୍ଦନୀଚୌକ କଟକ୍